# ଚତୁର୍ଥ ଅଧ୍ୟାୟ

ରୁଦ୍ରଦେବ ଯେ ଗଜପତି ॥ ପ୍ରତାପଦେବେ ନ ଜାଣନ୍ତି । ୧ ।
ବିଷ୍ଣୁ ଅଂଶରୁ ସେହୁ ଜାତ ॥ ସୂର୍ଯ୍ୟବଂଶୀ ଯେ ନାମ ଖ୍ୟାତ । ୨ ।
ତ୍ରିଭୁବନରେ ଜଣେ ନୃପ ॥ ବଢ଼ାଇ ତାହାର ଅମାପ । ୩ ।
ସକଳ ରାଜା ବଶ କଲେ ॥ ବେଣ୍ଟ ଭୂଆଣେ ତରିଜିଲେ । ୪ ।
ମହା ପ୍ରତାପୀ ମହା ତେଜା ॥ ସୁଖେ ପାଳଇ ଜନପ୍ରଜା । ୫ ।
ସହସ୍ରେ ବୀର ଘଣ୍ଟ ଘେନି ॥ ଦକ୍ଷିଣେ ଚଳନ୍ତି ପୁଣି । ୬ ।
ଉଦେଗିରି ଚନ୍ଦ୍ରଗିରିରେ ॥ ଭେଟିକ ବଳ ପ୍ରତାପରେ । ୭ ।
ପନ୍ଦର ଅଙ୍କେ କୃଷ୍ଣରାୟ ॥ ସଙ୍ଗତେ ଯୁଝେ ଉପରାୟ । ୮ ।
ଉତ୍ତରୁ ଗଜ ଇସିମାଳ ॥ ଚଢ଼ିଟି ଅଇଲ ଖେଦବୋଲ । ୯ ।
ଦୁହିଁଙ୍କୁ ଘେନିବ ବୋଲିଣ ॥ ମହାସଙ୍କଟ ଉପୁଜିଲ । ୧୦ ।

---

୧-୭ ଗଜପତି ପ୍ରତାପରୁଦ୍ରଙ୍କ ବ୍ୟକ୍ତିତ୍ୱ ସମ୍ପର୍କୀୟ ସୂଚନା ଏଠାରେ ବର୍ଣ୍ଣିତ । ବେଣ୍ଟଭୂଆଣ = ସୈନ୍ୟବାହିନୀର ଯିବାଆସିବା ଲାଗି ଜଙ୍ଗଲ କାଟି ରାସ୍ତା ତିଆରି କରିବା କାମ । ସୈନ୍ୟମାନେ ଯିବାଆସିବା କରିବା ପୂର୍ବରୁ ଏକ ଦଳ ଆଗୁଆ ସୈନ୍ୟ ଏହି କାମ କରୁଥିଲେ । ଏହି ଦଳକୁ 'ବେଣ୍ଟକାରଦଳ' ବା ଅଗୁଆ ଦଳ କୁହାଯାଉଥିଲା । କୃଷ୍ଣଦେବ ରାୟଙ୍କ ସହିତ ପରବର୍ତ୍ତୀ ସମୟରେ ହୋଇଥିବା ଯୁଦ୍ଧର ପୂର୍ବ ପ୍ରସ୍ତୁତି ସମ୍ପର୍କୀୟ ସୂଚନା ଏଠାରେ ବୋଧହୁଏ କବି ଦେଇଛନ୍ତି । ଉଦୟଗିରି ଓ ଚନ୍ଦ୍ରଗିରି ସେତେବେଳେ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

୮- ରାଜାଙ୍କ ପନ୍ଦର ଅଙ୍କ = ଖ୍ରୀ: ୧୫୦୯ । କୃଷ୍ଣଦେବ ରାୟ ବିଜୟନଗର ସାମ୍ରାଜ୍ୟର ସଂପ୍ରସାରଣ ଆଗ୍ରହରେ କଳୁ କରୁ ଆକ୍ରମଣ ଆରମ୍ଭ କଲେ । ପ୍ରତାପରୁଦ୍ର ବିଜୟନଗର ବିରୁଦ୍ଧରେ ଲିପ୍ତ ହେଲେ ଏବଂ ଦକ୍ଷିଣରେ ଅବସ୍ଥାନ କରୁଥିଲେ ।

୯- ଉତ୍ତରରୁ ବଙ୍ଗ ସୁଲତାନ ଗାଜୀ ଇସମାଇଲ ପୁରୀ ପର୍ଯ୍ୟନ୍ତ ମାଡ଼ିଆସି ଶ୍ରୀବିଗ୍ରହମାନଙ୍କୁ ଅପହରଣ କରିବାକୁ ଚେଷ୍ଟା କଲେ । ମାତ୍ର ସେବକମାନେ ବିଗ୍ରହମାନଙ୍କୁ ହାତୀ ପିଠିରେ ନେଇ ଚଉରଙ୍ଗା ସହକାରେ ଚିଲିକା ହ୍ରଦ ମଧ୍ୟରେ ଚଢ଼େଇ ଗୁମ୍ଫାରେ ଲୁଚାଇଲେ । ନୃସିଂହ ପରିଚ୍ଛା ନାମରେ ଜଣେ ବ୍ୟକ୍ତି ଏ କାର୍ଯ୍ୟ ସମ୍ପାଦନ କରିଥିଲେ । ଜଣେ 'ପାଇ' ହରକରା ଦୌଡ଼ି ଯାଇ କୃଷ୍ଣାବେଣୀ ନଦୀ କୂଳରେ ଅବସ୍ଥାନ କରୁଥିବା ଗଜପତି ରାଜାଙ୍କୁ ଏ ସମ୍ବାଦ ଦେଲେ ।

ସେବକେ ନେଇ ଲୁଚାଇଲେ ॥ ଗଡ଼ କେଙ୍କଲେ ଯାଇ ହେଲେ ।୧୧।
ହସ୍ତୀରେ ବସାଇ ବିଗ୍ରହ ॥ ଚଳେ ନୃସିଂହ ଉପରସ୍ଥ ।୧୨।
ଶଳକା ହରଦ ମଧର ॥ ଚଢ଼େଇ କୁମ୍ଭୀକ ଭିତର ।୧୩।
ବିଗ୍ରହମାନ ଲୁଚାଇଲେ ॥ ପାଟେଶ୍ୱ ଦକ୍ଷିଣେ ଗମିଲେ ।୧୪।
କୃଷ୍ଣାବେଣୀ ନଦୀ କୂଳର ॥ ରାଜାକୁ ବୋଲେ ସମାଚାର ।୧୫।
ଶୁଣି ପ୍ରତାପ ନୃପବର ॥ କ୍ରୋଧେ ବଚନ ଉଦଗାର ।୧୬।
ମୁଁ ଆଜ୍ଞା ଏହା କ ବେଭାର ॥ ପ୍ରଭୁଙ୍କୁ ଯବନେ ଅର୍ପିଲ ।୧୭।
ଚଢ଼େଇ ଘୁହା ବୋଲି ଅଣି ॥ ଶୁଣି ଧର୍ମୀ ନୃପମଣି ।୧୮।
ଗଡ଼ କେଙ୍କଲେ ଆସି ମିଳେ ॥ ଦର୍ଶନ କରଇ କାତରେ ।୧୯।
ବୋଇଲ ପ୍ରଭୁ କୃପା କର ॥ ଏ ରାଜ୍ୟ ଅଛଇ ତୋହର ।୨୦।
ତୋ ବଳେ ମୁହିଁ ବଳସ୍ପାର ॥ ସଂହର ଯବନ କ ଗ୍ରୁର ।୨୧।
ଜଗନ୍ନାଥ ନାମ ମାଳା କରେ ॥ ଚଳଇ ନୃପ ସତ୍ୱରରେ ।୨୨।
ମ୍ଳେଚ୍ଛମାନଙ୍କୁ ଘଉଡ଼ିଲ ॥ ମନ୍ଦାରଗଡ଼ ବୋଲି ଗଲ ।୨୩।
ଲେଉଟି ଅଇଲ ତୁରିତ ॥ ଦକ୍ଷିଣେ ଗମିଲ ଯାବନ୍ତ ।୨୪।
ସମର ହେଲ ଘୋରତର ॥ ନୃପତ ହେଲେକ କାତର ।୨୫।
ବୋଇଲେ ପ୍ରଭୁ ରକ୍ଷାକର ॥ ଏ ରାଜ୍ୟ ଅଛଇ ତୋହର ।୨୬।
ସଦାନାମକୁ ସୁମରଇ ॥ ପ୍ରଭୁର ପାଦେ ଚିତ୍ତ ଦେଇ ।୨୭।
ଏ କାଳେ କ୍ଷେତ୍ରେ ଆସି ମିଳେ ॥ ନବୀନ ସନ୍ଥ ଭକ୍ତମେଳେ ।୨୮।

---

ରାଜା ଏଥିରେ ବିଚଳିତ ହୋଇ ଗଡ଼ କେଙ୍କଲକୁ (ବୋଧହୁଏ ଅଧୁନିକ ବଙ୍କାଡ଼ ଗଡ଼) ଆସି ଶ୍ରୀଜଗନ୍ନାଥଙ୍କ ଦର୍ଶନ କଲେ ଏବଂ ରାଜ୍ୟର ସୁରକ୍ଷା ସକାଶେ ଆଜ୍ଞାମାଳ ପାଇ ଯବନ ହସ୍ତରୁ ରାଜ୍ୟର ସୁରକ୍ଷା ପାଇଁ ପଣ ନେଲେ। ମନ୍ଦାରଗଡ଼ ପର୍ଯ୍ୟନ୍ତ ସୈନ୍ୟଚାଳନା କରି ଯବନମାନଙ୍କୁ ଘଉଡ଼ାଇ ଦେଲେ ଏବଂ ଦକ୍ଷିଣ ଯାତ୍ରା କଲେ। ଏହା ବୋଧହୁଏ ଖ୍ରୀ: ୧୬୦୯-୧୦ର ଘଟଣା।

୨୮-୩୦ ଏତେବେଳେ ଶ୍ରୀକୃଷ୍ଣ ଚୈତନ୍ୟ ନୀଳାଚଳ ଧାମରେ ଆସି ପଦାର୍ପଣ କଲେ। ସେ ଏକାକୀ ଜଗନ୍ନାଥ ମନ୍ଦିରକୁ ପ୍ରବେଶ କଲେ ଏବଂ ପ୍ରେମଭାବର ଆବେଶରେ ମନ୍ଦିର ମଧ୍ୟରେ ଅଚେତନ ହୋଇପଡ଼ିଲେ। ଦୈବ ଯୋଗକୁ ମନ୍ଦିରରେ ବାସୁଦେବ ସାର୍ବଭୌମ ଥିଲେ। ସେ ଏହି ନୂତନ ଆଗନ୍ତୁକ ସନ୍ନ୍ୟାସୀଙ୍କୁ ଯାଷ୍ଟାମ୍ କରାଇଲେ ଏବଂ ନିଜ ଭବନକୁ ନେଇଗଲେ। କିଛି ସମୟ ପରେ ବୋଧହୁଏ ପଛରେ ପଡ଼ିଯାଇଥିବା ଚୈତନ୍ୟଙ୍କର ସହଚରମାନେ ଆସି ପ୍ରବେଶ ହେଲେ ଏବଂ ସାର୍ବଭୌମଙ୍କ ଗୃହରେ ସମସ୍ତେ ସମ୍ମିଳିତ ହୋଇ ପୁଣି ଦେହଲକୁ

ନାମ ତା କୃଷ୍ଣ ଚଇତନ୍ୟ || ସାକ୍ଷାତ ଈଶ୍ୱର ସମାନ |୨୯|
ଜଗନ୍ନାଥଙ୍କୁ ସେ ଦେଖିଣ || ପ୍ରେମରେ ହୋଏ ଅଚେତନ |୩୦|
ସାର୍ବଭୌମ ସେ ଦେଖିଲେ || ସାଷ୍ଟାମ ଯତନ କରାଇଲେ |୩୧|
ଆପଣା ଭବନକୁ ନେଲେ || ଭକତ ଜନେ ଆସି ହେଲେ |୩୨|
ଗଲେ ଦେଉଳେ ଦରଶନେ || ପ୍ରସାଦ ଭୁଞ୍ଜିଲେ ଆପଣେ |୩୩|
କ୍ଷେତ୍ରେ ଏକ ମାସ ଅବଧି || ଶାସ୍ତ୍ର ଚରଚ୍ଚ କଲେ ବୁଦ୍ଧି |୩୪|
ମାସକ ରହିଲେ କ୍ଷେତ୍ରର || ଦେଉଳେ କରଇ ସଞ୍ଚାର |୩୫|
ବଟ ଗଣେଶ ମୂଳେ ବସେ || ଜଗନ୍ନାଥ ଦାସ ପ୍ରତକ୍ଷେ |୩୬|
ରହାଂସ ମଣ୍ଡପ ନିର୍ମାଣି || ରାଧାକୃଷ୍ଣ ମୂର୍ତ୍ତି ଥାପଣି |୩୭|
ଭାଗବତ ରଚନା କରେ || ଭକତେ ଶୁଣନ୍ତି ସଧୀରେ |୩୮|
ଭାଗବତର ଭାବ ଯେତେ || ମଧୁର ସ୍ୱରେ ଗାଏ ନିତ୍ୟେ |୩୯|
ଦିନେକ ସନ୍ଧ୍ୟା ଅବକାଶେ || ଭକତେ ବୃନ୍ଦ ସେ ହରଷେ |୪୦|
ଭାଗବତ ଅର୍ଥ ବଖାଣେ || ଆସି ମିଳିଲେ ଚଇତନ୍ୟେ |୪୧|
ଭାଗବତ ଅର୍ଥ ଶୁଣିଲେ || ସ୍ୱାମୀର ଭାବ ସେ ବୁଝିଲେ |୪୨|
ନୟନ ଅଶ୍ରୁ ଜଳ ଝର || ଅଙ୍ଗେଣ ପୁଲକ ଅପାର |୪୩|
ଜଗନ୍ନାଥର ଏତେ ଭାବ || ଚୈତନ୍ୟ କଲେ ତାହା ଠାବ |୪୪|
ବୋଇଲେ ତୁ ଭକତ ଶ୍ରେଷ୍ଠ || ଭଗତ ଭାବେ ମତ ପୁଷ୍ଟ |୪୫|

---

ଯାଇ ଜଗନ୍ନାଥଙ୍କୁ ଦର୍ଶନ କଲେ । ଏହି ରୂପେ ଚୈତନ୍ୟଙ୍କର ଶ୍ରୀକ୍ଷେତ୍ର ଆଗମନ ଓ ଏଠାରେ ଅବସ୍ଥାନର ସମୟ ଏକ ମାସ ବୋଲି କବି ଏଠାରେ ସୂଚନା ଦେଇଛନ୍ତି ।

୩୬-୪୦ ବଟଗଣେଶ ମୂଳରେ ଜଗନ୍ନାଥ ଦାସ ଏକ କ୍ଷୁଦ୍ର ମଣ୍ଡପ ନିର୍ମାଣ କରି ସେଥିରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ସ୍ଥାପନ କରି ତାହାର ସମ୍ମୁଖରେ ବସି ପ୍ରତ୍ୟହ ଭାଗବତ ରଚନା କରିବା ସଙ୍ଗେ ସଙ୍ଗେ ଭାଗବତର ଅର୍ଥ ଲୋକଙ୍କୁ ବୁଝାଉଥିଲେ । ଭାଗବତ ପାଠ କଲାବେଳେ ତାଙ୍କ ସର୍ବାଙ୍ଗରେ ସାତ୍ତ୍ୱିକ ଭାବମାନ ପ୍ରକାଶ ପାଉଥିଲା । ଦିନେ ସନ୍ଧ୍ୟା ସମୟରେ ଚୈତନ୍ୟ ଆସି ଭାଗବତ ଶୁଣିଲେ ଏବଂ ଜଗନ୍ନାଥଙ୍କ ସାତ୍ତ୍ୱିକ ଭାବମାନ ଲକ୍ଷ୍ୟ କଲେ । ଏଥିରେ ସେ ଏତେଦୂର ମୁଗ୍ଧ ହୋଇପଡ଼ିଲେ ଯେ ଦୁହେଁ ଅଢ଼େଇ ପ୍ରହର ପର୍ଯ୍ୟନ୍ତ କୋଳାଗ୍ରତ ଅବସ୍ଥାରେ ରହିଲେ । ଚୈତନ୍ୟ କହିଲେ— ତୁମର ଏ ପ୍ରେମଭାବ ମୁଁ ଅନ୍ୟ କେଉଁଠାରୁ ପାଇନାହିଁ; ତେଣୁ ତୁମର ସଙ୍ଗ ମୁଁ ଛାଡ଼ିବି ନାହିଁ । ଜଗନ୍ନାଥ ଦାସଙ୍କୁ ଚୈତନ୍ୟ ଆଦରରେ ସ୍ୱାମୀ ବୋଲି ସମ୍ବୋଧନ କଲେ ଏବଂ ଜଗନ୍ନାଥ ଚୈତନ୍ୟଙ୍କୁ ପ୍ରଭୁ ବୋଲି ସମ୍ବୋଧନ କଲେ । ଏହିଠାରୁ ଉଭୟଙ୍କ ମଧ୍ୟରେ ଗଭୀର ତାଦାତ୍ମ୍ୟ ଭାବ ଜାତ ହେଲା ।

ତୋ ଭାବ ମୁଁ କାହୁଁ ପାଇବ || ତୋହର ସଙ୍ଗ ନ ଛାଡ଼ିବ ।୪୬।
ଅଚେତ ପ୍ରହର ପର୍ଯ୍ୟନ୍ତେ || ଦୁହେଁ ରହିଲେ କୋଳାଗ୍ରତେ ।୪୭।
ଦୁହେଁ ଏକତ୍ର ଠାବେ ବସି || ପରସ୍ପରକୁ ପ୍ରଶଂସନ୍ତି ।୪୮।
ସ୍ୱାମୀ ତୁ ବୋଇଲ ଚୈତନ୍ୟ || ପ୍ରଭୁ ତୁ ବୋଇଲ ଆପଣ ।୪୯।
ସମୁଦ୍ରେ ନଦୀ ଯେ ମିଶିଲ || ଭାବ ତରଙ୍ଗ ଉଛୁଳିଲ ।୫୦।
ସାର୍ବଭୌମ ସଙ୍ଗେ ମିଳଣ || ଅନେକ ଶାସ୍ତ୍ର ଯେ ପଠନ ।୫୧।
ମହାତାର୍କିକ ନ୍ୟାୟଶ୍ରେଷ୍ଠ || ସାର୍ବଭୌମ ଯେ ମହାଯୋଦ୍ଧା ।୫୨।
ପ୍ରଭୁ ସଙ୍ଗତେ ତର୍କବାଦ || ଅନେକ କ୍ଷେତ୍ରେ ସେ ବଞ୍ଚିତ ।୫୩।
ପ୍ରଭୁଙ୍କ ଭଗତ ଦେଖିଲ || ଅନ୍ତର ପ୍ରଭୁର ପ୍ରେମ ଶିଳ ।୫୪।
ଭଗତ କଥା ପରସଙ୍ଗେ || ପ୍ରଭୁ ସାତ୍ତ୍ୱିକ ଭାବ ଅଙ୍ଗେ ।୫୫।
କମ୍ପଇ ଓଠ ସ୍ୱେଦ ଅଙ୍ଗ || ବେପଥୁ ଭାବ ନୃତ୍ୟରଙ୍ଗ ।୫୬।
ଦେଖିଣ ସାର୍ବଭୌମ ବୋଲେ || ତୁ କି ହୋ ପ୍ରଭୁ ସ୍ୱୟଂ ହେଲେ ।୫୭।
ଭଗତ ଭାବ ମୁଁ ନ ଜାଣେ || ଶୁଷ୍କ ଅନ୍ତରେ ଯଶମାଣେ ।୫୮।
ପ୍ରଭୁ ସଙ୍ଗତେ କାଳକ୍ଷେପି || ପ୍ରଭୁ ବୋଇଲ ତୀର୍ଥ ଯିବ ।୫୯।
ଦକ୍ଷିଣ ଦେଶ ଯେବେ ଯିବ || ରାମରାୟ ସଙ୍ଗ ଲଭିବ ।୬୦।
ସେ ଜାଣେ ଭଗତର ତତ୍ତ୍ୱ || ରାଗମାର୍ଗେ ତା ମହତ୍ତ୍ୱ ।୬୧।
କୃଷ୍ଣ କଥା ମୁଁ ନ ଜାଣଇ || ରାମ ରାୟ ସବୁ ଜାଣଇ ।୬୨।
ଯେବେ ଦକ୍ଷିଣ ଦେଶ ଯିବ || ରାମ ରାୟେ ଅବଶ୍ୟ ଭେଟିବ ।୬୩।
ଗଲ ସେ ଦକ୍ଷିଣ ଭ୍ରମଣ || ମିଳିଲ ଗୋଦାବରୀ କୂଳେଣ ।୬୪।

---

୫୧-୬୩ ବାସୁଦେବ ସାର୍ବଭୌମଙ୍କ ସହିତ ଶ୍ରୀଚୈତନ୍ୟଙ୍କର ଶାସ୍ତ୍ରାଲୋଚନା ପ୍ରସଙ୍ଗ ଏଠାରେ ବର୍ଣ୍ଣିତ । ଦୁହେଁ ବିଦ୍ୟା ବିବାଦରେ ରତ ହେଲେ; ମାତ୍ର ଭକ୍ତିତତ୍ତ୍ୱ ପ୍ରସଙ୍ଗ ଆଲୋଚନା କାଳରେ ଶ୍ରୀଚୈତନ୍ୟଙ୍କ ସାତ୍ତ୍ୱିକ ବିକାରମାନ ସାର୍ବଭୌମଙ୍କୁ ଚମତ୍କୃତ କଲା । ଚୈତନ୍ୟଙ୍କର ଭଗବତ୍ତା ସାର୍ବଭୌମ ସ୍ୱୀକାର କଲେ । ମାତ୍ର ଭକ୍ତିତତ୍ତ୍ୱ ସେ କିଛି ଜାଣନ୍ତି ନାହିଁ ବୋଲି କହିଲେ । ଏ ସ୍ଥଳରେ ରାୟ ରାମାନନ୍ଦଙ୍କ ପାଣ୍ଡିତ୍ୟକୁ ସାର୍ବଭୌମ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଦକ୍ଷିଣକୁ ଯାଇ ରାଜମହେନ୍ଦ୍ରୀର ଶାସକ ରାୟ ରାମାନନ୍ଦଙ୍କୁ ଭେଟିବା ପାଇଁ ପରାମର୍ଶ ଦେଲେ । ଏଠାରେ ଶ୍ରୀଚୈତନ୍ୟଙ୍କର ଷଡ଼ଭୁଜ ପ୍ରଦର୍ଶନ ଓ ସାର୍ବଭୌମଙ୍କୁ ଉଦ୍ଧାର କରିବା ବିଷୟ ନାହିଁ । ଏହା ବୋଧହୁଏ କୃଷ୍ଣଦାସ କବିରାଜଙ୍କର ପରବର୍ତ୍ତୀ ସଂଯୋଜନା ।

୬୪-୮୦ ଚୈତନ୍ୟ ଗୋଦାବରୀ ନଦୀକୂଳରେ ପହଞ୍ଚିଲେ । ସାର୍ବଭୌମଙ୍କ ପରାମର୍ଶ

ସ୍ନାନ ଶଉଚ ହୋଇଅଛୁ || ବୃକ୍ଷ ମୂଳେ ଆସନ ପାରିଛୁ ।୬୫।
ସୁସ୍ଥେ ଗଉର ତା କାନ୍ତି || ବାଳସୂର୍ଯ୍ୟକୁ ଆଣେ ଭ୍ରାନ୍ତି ।୬୬।
ସୁବର୍ଣ୍ଣେ ନିର୍ମିଲ ପରି || ଦିଶଇ ଅଙ୍ଗ ତାର ଗୋରି ।୬୭।
ବାହୁ ଲମ୍ବଇ ଜାନୁ ସରି || ଆୟତ ଲୋଚନ ଉଭରି ।୬୮।
ବ୍ରହ୍ମତେଜ ଯେ ଝଟକଇ || ଅଧରୁ ମଧୁହାସ ଝରଇ ।୬୯।
ଏକାଳେ ରାମରାୟ ବଜେ || ନଦୀ ଘାଟରେ ଅଙ୍ଗ ମାଜେ ।୭୦।
ସଙ୍ଗତେ ପରିବାର ଜନ || ବାଜଇ ଝମକ ନିଶାଣ ।୭୧।
ଘାଟରୁ ଉଠେ ରାମରାୟ || ହାଣ୍ଡୋଳାରେ ବିଜେକ ରାୟ ।୭୨।
ବୃକ୍ଷ ମୂଳରୁ ଉଠି ଧାଇଁ || ଚୈତନ୍ୟ ଆସିଣ ମିଳଇ ।୭୩।
ତୁମେ କି ଅଟ ରାମରାୟ || ଦିଶୁଅଛ ରାଜା ପରାୟ ।୭୪।
ତକ୍ଷଣେ ଦୁହେଁ କୋଳ ହେଲେ || ମେଘେ ବିଦ୍ୟୁତ କି ମିଶିଲେ ।୭୫।
ତୁମରେ ଆସି ମୁଁ ମିଳିଲି || ଭାଗ୍ୟକୁ ମୋହର ଦେଖିଲି ।୭୬।
ରାମରାୟ ଯେ ବୋଲେ ସବେ || ଆସ ହେ ମୋହର ସମୀପେ ।୭୭।
ଅତିଥି ହୋଇ ଏଥେ ରହ || କରିବା ଶାସ୍ତ୍ର ପରିଚୟ ।୭୮।
ଭାଗ୍ୟକୁ ମୋହର ଅଇଲ || ସାଧୁର ସଙ୍ଗ ମୋତେ ଦେଲ ।୭୯।
ଦୁହେଁ ଆଳାପେ ରତ ହେଲେ || ଦଶଦିନ କାଳ ଯାପିଲେ ।୮୦।
ପଦ୍ମରେ ଚୋଗ୍ର ନାନା ଅର୍ଥ || ରାମରାୟ କହେ ଉଦନ୍ତ ।୮୧।

---

ଅନୁସାରେ ରାୟ ରାମାନନ୍ଦଙ୍କ ସାକ୍ଷାତ କରି ଭକ୍ତିତତ୍ତ୍ୱ ଶିକ୍ଷା କରିବା ତାଙ୍କର ଉଦ୍ଦେଶ୍ୟ । ଚୈତନ୍ୟ ନିତ୍ୟକର୍ମମାନ ଶେଷକରି ବୃକ୍ଷ ମୂଳରେ ଆସନ ପକାଇ ବସିଛନ୍ତି । ତାଙ୍କର କନକ-ଗୌରକାନ୍ତି ବାଳସୂର୍ଯ୍ୟର ଭ୍ରାନ୍ତି ସୃଷ୍ଟି କରୁଛି । ଆଜାନୁଲମ୍ବିତ ବାହୁ ଓ ଆୟତ ଲୋଚନ ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସର୍ବାଙ୍ଗରୁ ବ୍ରହ୍ମତେଜ ବିଚ୍ଛୁରିତ ହେଉଛି ଏବଂ ଅଧରରୁ ମଧୁହାସ ଝରୁଛି । ଏହି ସମୟରେ ରାୟ ରାମାନନ୍ଦ ଗୋଦାବରୀ ଘାଟ ସ୍ନାନ କରିବା ଲାଗି ଦଳବଳେ ହାଣ୍ଡୋଲାରେ ବିଜେକଲେ । ସ୍ନାନ ସାରି ସେ ହାଣ୍ଡୋଲାକୁ ଯାଉଛନ୍ତି—ଏହି ସମୟରେ ଚୈତନ୍ୟ ବୃକ୍ଷ ମୂଳରୁ ଉଠି ଧାଇଁଲେ । ତୁମେ ରାମାନନ୍ଦ ରାୟ ? ଏହି ପ୍ରଶ୍ନ ପରେ ଦୁହେଁ ପରସ୍ପରକୁ ଆଲିଙ୍ଗନ କଲେ । ଉଭୟେ ଉଭୟଙ୍କ ସାକ୍ଷାତ ଲାଭ କରିଥିବାରୁ ନିଜ ନିଜ ଭାଗ୍ୟକୁ ପ୍ରଶଂସା କଲେ । ଆତିଥ୍ୟ ଗ୍ରହଣ କରିବା ପାଇଁ ଚୈତନ୍ୟ ସମ୍ମତ ହେଲେ । ରାମାନନ୍ଦ କହିଲେ—ତୁମେ ଏଠାରେ ମୋର ଅତିଥି ହୋଇ ରହ, ତୁମକୁ ଶାସ୍ତ୍ର ସହିତ ପରିଚୟ କରାଇବି । ଏ ଶାସ୍ତ୍ର ହେଉଛି ବୈଷ୍ଣବ ରସଶାସ୍ତ୍ର ଓ ଭକ୍ତିତତ୍ତ୍ୱ ।

୮୧-୮୬ ଭବ ଏଠାରେ ରାୟ ରାମାନନ୍ଦ-ଚୈତନ୍ୟ ମିଳନର ତତ୍ତ୍ୱମାନ ସଂକ୍ଷେପରେ

ଭଗତ ମାର୍ଗର ଯେ ବିଧି || ରାଗ ମାର୍ଗର ଯେ ଅବଧି | ୮୨ |
ବହୁତ ତତ୍ତ୍ୱ ବଖାଣିଲେ || ବହୁତ ସମାଚାର ଦେଲେ | ୮୩ |
ଗୋପୀ ଭଗତ ଭାବ ଯେତେ || ଭାଗବତର ଶ୍ଲୋକ ଅର୍ଥେ | ୮୪ |
ସାଧ୍ୟ ସେ ନିରୂପଣ କଲେ || ଭଜନ ଉପାୟ ବାଢ଼ିଲେ | ୮୫ |
ବ୍ରହ୍ମସଂହିତା କର୍ଣ୍ଣାମୃତ || ଜୟଦେବ ଗୀତଗୋବିନ୍ଦ | ୮୬ |
ରାଗ ମାର୍ଗର ଭାବ ଯେତେ || ସବୁ ସେ ବୋଇଲେ ରୁଚିତେ | ୮୭ |
ଭଗତ ଭାବ ଗଟ୍ଦୁସୀ || କହିଲେ ପ୍ରେମ ପରଶଂସି | ୮୮ |
ପ୍ରେମ ହିଁ ଅଟେ ପୁରୁଷାର୍ଥ || ଭଗତ ମାର୍ଗର ପର୍ଯ୍ୟନ୍ତ | ୮୯ |
ରାୟ କହିଲେ କାନ୍ତାପ୍ରେମ || ଭଜନ ମାର୍ଗ ଏ ଉତ୍ତମ | ୯୦ |
କାନ୍ତାଭାବେଣ କୃଷ୍ଣଭଜ || ସାଧନ ମାର୍ଗର ଏ ଶେଷ | ୯୧ |
ତଥାପି ଗୋରା ନ ବୁଝିଲେ || ଆଗ୍ର ବାଟ କହ ବୋଇଲେ | ୯୨ |
ଶେଷେ ରାମରାୟ ଭଣଇ || ରାଧା ପ୍ରେମ ସାଧ୍ୟ ଅଟଇ | ୯୩ |
ମଧୁର ରାଧାର ଯେ ଭାବ || ରାୟ କହିଲେ ସରବ | ୯୪ |
କୃଷ୍ଣ ଶକ୍ତି ଅଟଇ ତିନି || ସନ୍ଧିନୀ ସମ୍ବନ୍ଧିନୀ ହ୍ଲାଦିନୀ | ୯୫ |
ହ୍ଲାଦିନୀ ଅଟଇ କୃଷ୍ଣର || ସ୍ୱରୂପ ଶକ୍ତି ଏ ବେଭାର | ୯୬ |
ହ୍ଲାଦିନୀ ଆନନ୍ଦ ଅଟଇ || କୃଷ୍ଣଙ୍କୁ ଆନନ୍ଦ ଦିଅଇ | ୯୭ |
ହ୍ଲାଦିନୀ ଶକତି ରାଧିକା || ପ୍ରେମରେ ହୋଇଥାଇ ନିଶଙ୍କା | ୯୮ |

---

ବର୍ଣ୍ଣନା କରିଛନ୍ତି । ରାୟ ରାମାନନ୍ଦଙ୍କ ପକ୍ଷରେ ତତ୍ତ୍ୱ ବିଶ୍ଳେଷଣରେ ପ୍ରଧାନ ଅବଲମ୍ବନ ଥିଲା ଭାଗବତ, ବ୍ରହ୍ମସଂହିତା, କୃଷ୍ଣକର୍ଣ୍ଣାମୃତ ଓ ଗୀତଗୋବିନ୍ଦ । ଦଶଦିନ କାଳ ଉଭୟଙ୍କ ମଧ୍ୟରେ ଚର୍ଚ୍ଚା ଚାଲିଲା । ରାମାନନ୍ଦ ଅନେକ ବିଷୟ କହିଲେ । ସେ ସବୁ ପରେ ବୈଷ୍ଣବ ଭକ୍ତିତତ୍ତ୍ୱ ଓ ରସତତ୍ତ୍ୱର ମୂଳସୂତ୍ର ରୂପେ ପରିଗଣିତ ହୋଇଛି ଏବଂ ଷଡ଼୍‌ଗୋସ୍ୱାମୀ ଓ କୃଷ୍ଣଦାସ କବିରାଜ ଏହି ତତ୍ତ୍ୱ ଗୁଡ଼ିକୁ ଭିତ୍ତି କରି ପରେ ବୃନ୍ଦାବନରେ ବସି ବିଶାଳ ବୈଷ୍ଣବ ଶାସ୍ତ୍ରର ସୁରମ୍ୟ ପ୍ରାସାଦ ନିର୍ମାଣ କରିଅଛନ୍ତି ।

୮୭-୯୨ ରାଗମାର୍ଗର ସକଳ ତତ୍ତ୍ୱ ରାମାନନ୍ଦ ବ୍ୟାଖ୍ୟାନ କଲେ । ପ୍ରେମକୁ ପୁରୁଷାର୍ଥ ରୂପେ ପ୍ରତିପାଦନ କରି ଏହା ଭକ୍ତି ମାର୍ଗର ଶେଷକଥା ବୋଲି ପ୍ରକାଶ କଲେ । କାନ୍ତାପ୍ରେମକୁ କୃଷ୍ଣଭଜନର ସର୍ବଶ୍ରେଷ୍ଠ ସାଧନ ବୋଲି କହିଲେ । ତଥାପି ଚୈତନ୍ୟ ନ ବୁଝିଲା ପରି ରହିଲେ ଏବଂ ଅଗ୍ର ବାଟ କହ ବୋଲି ଅନୁରୋଧ କଲେ ।

୯୩-୧୦୫ ରାଧାର ପ୍ରେମକୁ ଶ୍ରେଷ୍ଠ ସାଧ୍ୟ ବୋଲି ପ୍ରକାଶ କଲେ । ରାଧା ଭାବର ମାଧୁର୍ଯ୍ୟ ନାନା ଭାବରେ ବିଶ୍ଳେଷଣ କଲେ । କୃଷ୍ଣଙ୍କର ତ୍ରିବିଧ ଶକ୍ତି-ସନ୍ଧିନୀ, ସମ୍ବନ୍ଧିନୀ ଓ

ଆନନ୍ଦ ଆହ୍ଲାଦିନୀ ରାଧା ॥ କୃଷ୍ଣଙ୍କର ମୋହକ ସର୍ବଦା । ୯୯ ।
ଆହ୍ଲାଦିନୀର ସାର ପ୍ରେମ ॥ କୃଷ୍ଣ ଅଟନ୍ତି ଜୀବନ । ୧୦୦ ।
ସକଳ କାନ୍ତା ଶିରୋମଣି ॥ ମହାଭାବର ସ୍ୱରୂପିଣୀ । ୧୦୧ ।
କୃଷ୍ଣ ତା ଭିତରେ ବାହାରେ ॥ କୃଷ୍ଣ ଦେଖଇ ସକଳରେ । ୧୦୨ ।
ମହାଭାବ ଅଟଇ ଦୁଇ ॥ ରୂଢ଼ ଅଧିରୂଢ଼ ବୋଲଇ । ୧୦୩ ।
ଅଧିରୂଢ଼ ମହାଭାବର ॥ ଚରମ ମାଦନ ଭେଦର । ୧୦୪ ।
ରାଧା ଅଟଇଟି ମାଦନ ॥ ମହାଭାବ ଏ ନିରୂପଣ । ୧୦୫ ।
ମହାଭାବ ଏ ଚିନ୍ତାମଣି ॥ ରାଧାର ସ୍ୱରୂପ ବଖାଣି । ୧୦୬ ।
ଏକ ସେ ଲୀଳା ଭେଦଭାଗ ॥ ରାଧାର ଭାବ ଅହେତୁକ । ୧୦୭ ।
ରାଧାଭାବେ ଅନୁଗତ ହୋଇ ॥ ଅବଶ୍ୟ କୃଷ୍ଣ ସେହୁ ପାଇ । ୧୦୮ ।
ତା ତତ୍ତ୍ୱ ନାହିଁ ଅନ୍ୟ ବାଟ ॥ ଏହୁଟି ଶାସ୍ତ୍ରର ପ୍ରକଟ । ୧୦୯ ।
କୃଷ୍ଣ ବିରହେ ରାଧା ଝୁରେ ॥ ଚକ୍ଷୁରୁ ଲୋତକ ସେ ଝରେ । ୧୧୦ ।
ଗୋବିନ୍ଦ ବିରହର ବାଧା ॥ ତା ତତ୍ତ୍ୱ ନାହିଁ ଅନ୍ୟ ପନ୍ଥା । ୧୧୧ ।
ସେ ଭାବେ ଯେ କୃଷ୍ଣ ଭଜଇ ॥ ଅବଶ୍ୟ କୃଷ୍ଣ ସେ ଲଭଇ । ୧୧୨ ।
କହିଲ ଏ ପରମତତ୍ତ୍ୱ ॥ ଭଗତି ମାର୍ଗର ପର୍ଯ୍ୟନ୍ତ । ୧୧୩ ।
ଆଉ କି ଅଛୁ ତୋର ଶଙ୍କା ॥ ସର୍ବର ହୋଇଣ ନିଶଙ୍କା । ୧୧୪ ।
ତୁମ୍ଭ କି ଅଟ ସ୍ୱୟଂ ପ୍ରଭୁ ॥ ମୋ ଚିତ୍ତ ଆସିଣ ନିବାତ୍ତୁ । ୧୧୫ ।
ତୁ ଅଟ ରାଧା ଅବତାର ॥ ସ୍ୱରୂପ ଆସ୍ୱାଦ ତୋହର । ୧୧୬ ।
ପ୍ରଭୁ ବୋଲନ୍ତି କହ କହ ॥ ରାଧାର ଭାବ ଯେ ଦୁସହ । ୧୧୭ ।
ଶୁଣିବ ତୋର ମୁଖୁ ମୁହିଁ ॥ ସଂଶୟ ଖଣ୍ଡିବ ତତୋଇ । ୧୧୮ ।
ରାମରାୟ ସେ ଶ୍ଳୋକ ପଢ଼େ ॥ ପହିଲଇ ରାଗନୟନ ଭଙ୍ଗଭେଲେ । ୧୧୯ ।
କମ୍ପିଲ ପ୍ରଭୁର ସର୍ବାଙ୍ଗ ॥ ଲୋତକେ ତିନ୍ତାଇଣ ବକ୍ଷ । ୧୨୦ ।
ବେପଥୁ ଭାବେ ଅଙ୍ଗରାଗ ॥ କଦମ୍ବ କେଶର ପ୍ରାୟେକ । ୧୨୧ ।
ରାମରାୟ ମୁଖେ ହାତ ଦେଇ ॥ ବୋଇଲେ ହେଉହେଲ କହି । ୧୨୨ ।
ରାୟଙ୍କୁ ଅଲିଙ୍ଗନ କଲ ॥ ତାଲେ ସେ ସାଷ୍ଟାମ ହୋଇଲ । ୧୨୩ ।
କହିଲ ସେ ପରମ ତତ୍ତ୍ୱ ॥ ଖଣ୍ଡିଲ ସଂଶୟ ଅଶେଷ । ୧୨୪ ।

---

ହ୍ଲାଦିନୀ । ହ୍ଲାଦିନୀ କୃଷ୍ଣଙ୍କର ସ୍ୱରୂପ ଶକ୍ତି । ହ୍ଲାଦିନୀ ଶକ୍ତି ଆନନ୍ଦମୟୀ । ଶ୍ରୀରାଧା ହିଁ ଏହି ହ୍ଲାଦିନୀ ଶକ୍ତିର ନାମାନ୍ତର । ହ୍ଲାଦିନୀ ଶକ୍ତି ବଳରେ ରାଧା ମହାଭାବମୟୀ । ମହାଭାବ ପୁଣି ଦ୍ୱିବିଧ-ରୂଢ଼ ଓ ଅଧିରୂଢ଼ । ଅଧିରୂଢ଼ ମହାଭାବ ମାଦନାଖ୍ୟ । ଶ୍ରୀରାଧା ହିଁ ଏହି ମାଦନାଖ୍ୟ ମହାଭାବ ।

୧୦୬-୧୧୯ ରାଧା ଭାବରେ କୃଷ୍ଣ ଭଜନକୁ ହିଁ ରାମାନନ୍ଦ ସର୍ବଶ୍ରେଷ୍ଠ ଭଜନ ମାର୍ଗ ବୋଲି ନିରୂପଣ କଲେ । ତଥାପି ଆଉ କିଛି ସଂଶୟ ଥାଇପାରେ ବୋଲି ପ୍ରଶ୍ନ

[ ଅଠେଇଶ ]

ପ୍ରଭୁ ବୋଇଲେ ତୁ ମୋ ଗୁରୁ || ଶିଖିଲି ତତ୍ତ୍ୱ ତୋ ମୁଖରୁ | ୧୨୫ |
ଗୁରୁ ପଦ ଏ ପ୍ରଭୁ ଥିବ || କ୍ଷଣେ ମନରୁ ନ ଛାଡ଼ିବ | ୧୨୬ |
ରାୟ ବୋଇଲେ ଶୂଦ୍ରାଧମ || ମୁ ଛାର ଶାସ୍ତ୍ରର ପ୍ରମାଣ | ୧୨୭ |
ଗୁରୁ ପଣରେ ଗଣ ଭାବି || ଅଧମ ମୁହିଁ ଅଟଇ | ୧୨୮ |
ପ୍ରଭୁ ବୋଇଲେ ଶିକ୍ଷା ଦେଲ || ଦୁର୍ଲଭ ତତ୍ତ୍ୱ ଉପଦେଶିଲ | ୧୨୯ |
ତୁମର ମହିମା ଶୁଣିଲି || ତୁମଠାକୁ ଯେ ଅଇଲି | ୧୩୦ |
ପ୍ରତ୍ୟକ୍ଷ କଲି ସର୍ବ ତତ୍ତ୍ୱ || ପ୍ରେମଧନ ଯେ ରସାବର୍ତ୍ତ | ୧୩୧ |
ହ୍ଲାଦିନୀ ଶକ୍ତିର ଯେ କଥା || ଏ ମାନ କାହୁଁ କି ମିଳନ୍ତା | ୧୩୨ |
ଗୁରୁ ମୋର ହେଲ ଆଜହୁଁ || ଦ୍ୱିଜରେ ଶୂଦ୍ର ଭ୍ରମ ଉପୁଜଇ | ୧୩୩ |
ଏମନ୍ତେ ଦଣ୍ଡବତ କଲେ || ତଦନ୍ତେ ଦକ୍ଷିଣ ଗମିଲେ | ୧୩୪ |

---

ଭଜିବାକୁ କହିଲେ ଏବଂ ତତ୍ ସହିତ କହିଲେ—ତୁମେ ହିଁ ସ୍ୱୟଂ ପ୍ରଭୁ । ତୁମେ ହେଉଛ ରାଧା-ଅବତାର ଏବଂ ସ୍ୱରୂପ ଆସ୍ୱାଦନ କରିବା ତୁମର ମୂଳ ଅଭିପ୍ରାୟ । ଚୈତନ୍ୟ ତାପରେ କାତର ଭାବରେ ପ୍ରଶ୍ନ କଲେ - ରାଧାଙ୍କ କୃଷ୍ଣ ବିରହ ବ୍ୟଥା ସମ୍ପର୍କରେ ହିଁ କହ । ତାହା ମୋ ପକ୍ଷରେ ଦୁଃସହ ହେଲେ ମଧ୍ୟ ମୁଁ ତାହା ହିଁ ତୁମଠାରୁ ଶୁଣିବାକୁ ଚାହୁଁଛି । ତାପରେ ରାମାନନ୍ଦ ତାଙ୍କର ବିଖ୍ୟାତ ପଦ "ପହିଲହି ରାଗନୟନ ଭଙ୍ଗ ଭେଲ" ଇତ୍ୟାଦି ଗାନ କଲେ । ଏଥିରେ ଚୈତନ୍ୟ ଏତେଦୂର ତନ୍ମୟ ହୋଇପଡ଼ିଲେ ଯେ, ତାଙ୍କ ଦେହରେ ସାତ୍ତ୍ୱିକ ଭାବମାନ ଦେଖାଦେଲା—କଦମ୍ବକେଶର ପରି ତାଙ୍କର ରୋମମାନ ଟାଙ୍କୁରି ଉଠିଲା । ରାମାନନ୍ଦଙ୍କ ମୁଖରେ ହାତଦେଇ ଆଉ ଅଧିକ ଅଗ୍ରସର ନ ହେବା ପାଇଁ ଅନୁରୋଧ କଲେ ଏବଂ ବ୍ୟାକୁଳ ଭାବରେ ରାମାନନ୍ଦଙ୍କୁ କୋଳ କଲେ । କହିଲେ - ତୁମେ ମୋତେ ପରମତତ୍ତ୍ୱ କହିଲ; ମୋର ବହୁ ସଂଶୟ ଖଣ୍ଡନ କଲ । ତୁମେ ଆଜିଠାରୁ ମୋର ଗୁରୁ ହେଲ । ତୁମକୁ ମୁଁ ସର୍ବଦା ଗୁରୁ ରୂପେ ସ୍ମରଣ କରୁଥିବି । ରାୟ କହିଲେ— ମୁଁ ଶୂଦ୍ରାଧମ, ଏହି ତତ୍ତ୍ୱ ବର୍ଣ୍ଣନାରେ ମୁଁ କେବଳ ନିମିତ୍ତ ମାତ୍ର । ଏ ସମ୍ପର୍କରେ ମୁଁ ଶାସ୍ତ୍ରୀୟ ସିଦ୍ଧାନ୍ତ ହିଁ ତୁମକୁ କହିଲି । ତେଣୁ ତୁମର ଗୁରୁ ହେବାର ମୋ ପକ୍ଷରେ ଧୃଷ୍ଟତା ମାତ୍ର । ଚୈତନ୍ୟ କହିଲେ ତୁମର ମହିମା ଶୁଣି ମୁଁ ତୁମ ନିକଟକୁ ଆସିଲି । ପ୍ରେମଧନ, ରସତତ୍ତ୍ୱ, ରାଧାଭାବ, ହ୍ଲାଦିନୀ ଶକ୍ତି କଥା ମୁଁ କୌଣସିଠାରୁ ଜାଣିପାରି ନ ଥାନ୍ତି । ତୁମଠାରୁ ହିଁ ପ୍ରଥମେ ମୁଁ ଏହି ତତ୍ତ୍ୱ ଶିକ୍ଷା କଲି । ତେଣୁ ତୁମେ ଆଜିଠାରୁ ମୋର ଗୁରୁ ହେଲ । ତୁମେ ପ୍ରକୃତରେ ଜଣେ ବ୍ରାହ୍ମଣ । ତୁମର ଶୂଦ୍ରତ୍ୱ ଏକ ଭ୍ରମ ମାତ୍ର ।

୧୩୪-୧୩୫ ଚୈତନ୍ୟ ରାଜମହେନ୍ଦ୍ରୀରେ ରାମାନନ୍ଦଙ୍କ ସହିତ ଦଶଦିନ ଯାପନ କରି ଏ ସମସ୍ତ ତତ୍ତ୍ୱ ଶିକ୍ଷା କଲାପରେ ଦକ୍ଷିଣକୁ ଯାତ୍ରାକଲେ । ସେତୁବନ୍ଧ,

| | | |
|---|---|---|
| ସେତୁବନ୍ଧ ସେ ରାମେଶ୍ୱର ॥ | ଶ୍ରୀରଙ୍ଗ ଉଡ଼ୁପି ଶଙ୍କର | ।୧୩୫। |
| ପୀଠମାନନ୍ତ କେତେ ହେଲ ॥ | ପ୍ରୟାଗେ ଆସିଣ ମିଳିଲ | ।୧୩୬। |
| ଅନେକ ତୀର୍ଥମାନ ଭ୍ରମି ॥ | ବୃନ୍ଦାବନରେ ଅନୁକ୍ରମି | ।୧୩୭। |
| କୃଷ୍ଣକଥା ସେ ରସସାର ॥ | କୀର୍ତ୍ତନ ନାମ ସେ ପ୍ରସାର | ।୧୩୮। |
| ଆସି ହେଲ ରାଜମନ୍ଦ୍ରୀର ॥ | ରାମରାୟଙ୍କୁ ବୋଲେ ଚାଲ | ।୧୩୯। |
| ଏତେକି ନରହରି କ୍ଷଣେ ॥ | ରାଜକାର୍ଯ୍ୟ ତ୍ୟଜ ତକ୍ଷଣେ | ।୧୪୦। |
| ବସିବା ନୀଳାଚଳେ ଯନ ॥ | ତୋ ବିନା ଦୁଃଖ ଅକାରଣ | ।୧୪୧। |
| ରାୟ ବୋଇଲ ହେଉ ହେଲ ॥ | ଆଗେ ଯାଅ ବୋଲି ବୋଇଲ | ।୧୪୨। |
| ପ୍ରଭୁ ସେ କେହ୍ଟି ଅଛିଲ ॥ | ନୀଳାଚଳରେ ଆସି ହେଲ | ।୧୪୩। |
| ରାଜାର ଊନବିଂଶ ଅଙ୍କେଣ ॥ | ରାୟ ମିଳଇ ନୀଳାଚଳେଣ | ।୧୪୪। |
| ରାଜା ବୋଇଲ ଭଲ ହେଲ ॥ | ମନ୍ଦର ଭାର ସମର୍ପିଲ | ।୧୪୫। |
| ମନ୍ଦର ସ୍ୱାମୀ ଲଭ ବୁଝ ॥ | ଏଥେ ତୋହର ସିନା କାର୍ଯ୍ୟ | ।୧୪୬। |
| ରାମରାୟ ସେ ଅଙ୍ଗୀକାର ॥ | ବୁଝଇ ମନ୍ଦର ବେଭାର | ।୧୪୭। |
| ଶ୍ରୀଜଗଦେବଙ୍କୁ ହକାରି ॥ | ତୁ ଯାଅ ରାଜମହେନ୍ଦ୍ରସ୍ଥ | ।୧୪୮। |

---

ରାମେଶ୍ୱର, ଶ୍ରୀରଙ୍ଗନାଥ, ଉଡ଼ୁପି ପ୍ରଭୃତି ପୀଠମାନ ଅତିକ୍ରମ କରି ସେ ପ୍ରୟାଗରେ ପହଞ୍ଚିଲେ । ପ୍ରୟାଗରୁ ସେ ନୀଳାଚଳକୁ ନ ଆସି ଗଲେ ରାଜମହେନ୍ଦ୍ରୀକୁ । ଏହା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ରାମାନନ୍ଦଙ୍କୁ କହିଲେ— ରାୟ ! ତୁମ ବିନା ନୀଳାଚଳରେ ବାସ କରିବା ମୋ ପାଇଁ ନିଷ୍ଫଳ ମନେ ହେବ । ତେଣୁ ତୁମେ ରାଜକାର୍ଯ୍ୟ ତ୍ୟଜି ନୀଳାଚଳ ଚାଲ । ସେଠାରେ ଦୁହେଁ ଏକତ୍ର ବାସ କରି କୃଷ୍ଣକଥା ଆଲୋଚନାରେ କାଳଯାପନ କରିବା । ଶାସନଗତ କାରଣରୁ ରାମାନନ୍ଦ ସେତେବେଳକୁ ଶାସକ ପଦରୁ ବିଦାୟ ନେବା ପାଇଁ ରାଜାଦେଶ ବା ଇଙ୍ଗିତ ପାଇ ସାରିଥିଲେ । ଚୈତନ୍ୟଙ୍କୁ ଆଗେ ପଠାଇ ଦେଇ ରାମାନନ୍ଦ ପରେ ଆସି ନୀଳାଚଳରେ ଉପସ୍ଥିତ ହେଲେ ।

୧୪୪ । ରାଜାଙ୍କ ଊନବିଂଶ ଅଙ୍କ = ଖ୍ରୀ: ୧୫୧୨ । ରାୟ ରାମାନନ୍ଦ ପୁରୀକୁ ଫେରିଆସି ମନ୍ଦର ପ୍ରଶାସନ ଦାୟିତ୍ୱ ଗ୍ରହଣ କଲେ । ମନ୍ଦର ସ୍ୱାମୀ ଲାଭ ବୁଝିବା କାର୍ଯ୍ୟରେ ରାଜାଙ୍କ ଦ୍ୱାରା ସେ ନିଯୁକ୍ତ ହେଲେ । ରାଜମହେନ୍ଦ୍ରୀର ଶାସକ ପଦ ଅପେକ୍ଷା ମନ୍ଦର ପ୍ରଶାସନ ଦାୟିତ୍ୱ ବହନ କରିବା ପାଇଁ ରାମାନନ୍ଦଙ୍କ ଯୋଗ୍ୟତା ଅଧିକ ଅନୁକୂଳ ବୋଲି ଗଜପତି ଏପରି ପରିବର୍ତ୍ତନ ଆଦେଶ ଦେଇଥିବା ଏଥିରୁ ସ୍ପଷ୍ଟ ଜଣାଯାଏ ।

୧୪୮-୧୫୬ ରାଜା ଶ୍ରୀଜଗଦେବଙ୍କୁ ରାଜମହେନ୍ଦ୍ରୀର ଶାସକ ନିଯୁକ୍ତ କଲେ ଏବଂ ଏହି ଅବକାଶରେ 'ବାହିନୀପତି' (ଏକ ସାମରିକ ଉପାଧି— ପାଞ୍ଚ ହଜାର ସୈନ୍ୟର ଚାଳକ) ଉପାଧି ଦେଲେ । ଆଗରେ ଯେ ଉକ୍ତ ଭାଗବତ ମହାକାବ୍ୟ ଓ ଉକ୍ତ

ସେଠାଇଁ ରାଜକାର୍ଯ୍ୟ ତୁଚ୍ଛ || ସଇନବଳ ସଙ୍ଗେ ରଙ୍ଗ ।୧୪୯।
ଜୀବଦେବଙ୍କୁ ପଦ ଦେଲ || ବାହିନୀପତି ବୋଲିଲ ।୧୫୦।
ଜୀବଦେବ ଯେ ସାମରଥୀ || ଭଗତ ସବେ ମହାବୋଧୀ ।୧୫୧।
ରାଜସ୍ୱରୁ ଯେ ଅଟଇଟି || କବି ଡିଣ୍ଡିମ ବୋଲଇଟି ।୧୫୨।
ବହୁତ କାବ୍ୟ ନାଟ କଲ || କବିତା ଶକ୍ତି ପ୍ରକାଶିଲ ।୧୫୩।
ରଚିଲ ଭଗତ ବୈଭବ || ଉତ୍ସାହବତୀ ଯେ ରୂପକ ।୧୫୪।
ଦେଖିଲେ ନାଟ ଏହୁ ହେଲ || ରାଜାର ମେଳଣି ଲଭିଲ ।୧୫୫।
ରହିଲ ରାଜମହେନ୍ଦ୍ରୀରେ || ସଇନବଳ ଠୁଳ କରେ ।୧୫୬।
ରାମରାୟ ଯେ କ୍ଷେତ୍ରେ ରହି || ସାଧୁ ବୈଷ୍ଣବେ ସମ୍ମତେ ।୧୫୭।
ରଚିଲ ମଣ୍ଡପ ଯେ ଏକ || ଉତ୍ତର ପାର୍ଶ୍ୱ ସମୀପ ।୧୫୮।
ତହିଁ ବୈଷ୍ଣବେ ଗୋଷ୍ଠୀ ହେଲେ || କୃଷ୍ଣ ରସରେ ମତ୍ତ ହେଲେ ।୧୫୯।
ଦିନ ବଞ୍ଚିଲେ କୃଷ୍ଣ ରସେ || ଭଜିଲ ମାଧବ ହରଷେ ।୧୬୦।

---

ବୈଭବ ନାଟକ ରଚନା କରିଥିଲେ ଏବଂ ରାଜାଙ୍କ ଠାରୁ ଆପଣାର କବିତ୍ୱ ଲାଗି 'କବିଡିଣ୍ଡିମ' ଉପାଧି ଓ ଅନ୍ୟ ଉପାୟନ ଲାଭ କରିଥିଲେ । 'ଭକ୍ତବୈଭବ ନାଟକ' ଓ 'ଉତ୍ସାହବତୀ' ରୂପକ ଶ୍ରୀମନ୍ଦିରରେ ଅଭିନୀତ ହୋଇଥିଲା । ରାଜମହେନ୍ଦ୍ରୀରେ ପହଞ୍ଚି ସୈନ୍ୟ ସଙ୍ଗଠନ କରିବା ହେଲା ଜୀବଦେବଙ୍କ ପ୍ରଧାନ କାର୍ଯ୍ୟ । ଏହା ଥିଲା ଆସନ୍ନ ଯୁଦ୍ଧର ସମୟ ।

୧୫୬-୧୬୦ ରାୟ ରାମାନନ୍ଦ ପୂର୍ବରେ ରାଜ ମନ୍ଦିର ହାନି ଲାଭ ବୁଝିଲେ ଏବଂ ଆଗନ୍ତୁକ ସାଧୁ ବୈଷ୍ଣବଙ୍କର ଭଲମନ୍ଦ ବୁଝିଲେ । ମନ୍ଦିରର ଉତ୍ତର ପାର୍ଶ୍ୱରେ ସେ ଏକ ମଣ୍ଡପ ନିର୍ମାଣ କରାଇଲେ । ପୂର୍ବରେ ସମବେତ ପଞ୍ଚସଖା ଓ ଶ୍ରୀଚୈତନ୍ୟ ପ୍ରମୁଖ ବୈଷ୍ଣବମାନଙ୍କର ଏହି ସ୍ଥାନ ହେଲା ଏକ ମିଳନ ମଣ୍ଡପ ବା ଇଷ୍ଟ ଗୋଷ୍ଠୀର ମଣ୍ଡପ ।



# ପଞ୍ଚମ ଅଧ୍ୟାୟ

ଊନବିଂଶ ଅଙ୍କ ବିଷୟେ ॥ ଶୁଣ ସୁଜନେ ମନ ଅୟେ ।୧।
ପ୍ରତାପରୁଦ୍ର ଗଜପତି ॥ ରଥଯାତ୍ରାକୁ ବିଜେ ହୋନ୍ତି ।୨।
ନବୀନ ବସ୍ତୁ ଯତି କଥା ॥ ଶୁଣେ ରାମ ରାୟ ଠାରୁ ତା ।୩।
ନବୀନ ସନ୍ନ୍ୟାସୀ ଆସିଲ ॥ ବୁଢ଼ା ଲେଙ୍କା ସେ ବଖାଣିଲ ।୪।
ଚଢ଼ନ୍ତୁ ଆଣି ପତ୍ତେ ପଢ଼େ ॥ କୁମାର ଯତି ଆସିଥିଲେ ।୫।
ଅଛଇ ସେହୁ ଏହୁ ସ୍ଥାନେ ॥ ସାରଣ ଦକ୍ଷିଣ ଭ୍ରମଣେ ।୬।
ରାଜା ବୋଇଲ ହେଉ ହେଲ ॥ ଛେରା ପହଁରାକୁ ଚଳିଲ ।୭।
ଛେରା ପହଁରାଏ ରଥର ॥ ଦେଖିଲେ କୀର୍ତ୍ତନ ଗୋଚର ।୮।
ଦେଖିଣ ଆଚମ୍ବିତ ହେଲେ ॥ ଚୈତନ୍ୟ ରୂପେ ଭେଟ ହେଲେ ।୯।
ରାମ ରାୟ ଯେ ସଙ୍ଗତରେ ॥ ଅଛଇ ପ୍ରଭୁ ନିକଟରେ ।୧୦।
କହ୍ନାଇ ଦାସ ଜଗନ୍ନାଥ ॥ ବଳରାମ ଯେ ଯଶୋବନ୍ତ ।୧୧।
ସ୍ୱରୂପ ଅଚ୍ୟୁତ ଅନନ୍ତ ॥ ଗଦାଧର ଯେ ଶିବାନନ୍ଦ ।୧୨।
ଭଉଁଣୀ ରଘୁ ଅରକ୍ଷିତ ॥ ସଙ୍ଗେ ତା ଅଛନ୍ତି ବହୁତ ।୧୩।

---

୧। ରାଜାଙ୍କ ଊନବିଂଶ ଅଙ୍କ = ଖ୍ରୀ: ୧୫୧୨।

୨। ୧୩ ଏହି ବର୍ଷ ରଥଯାତ୍ରାକୁ (ଖ୍ରୀ: ୧୫୧୨-ଜୁନ୍ ଜୁଲାଇ ମାସ) ଗଜପତି ପୁରୀରେ ପହଞ୍ଚିଥିଲେ। ଚୈତନ୍ୟଙ୍କ ସମ୍ପର୍କରେ ରାଜା ରାୟ ରାମାନନ୍ଦଙ୍କ ଠାରୁ ଆଗରୁ କିଛି ଶୁଣିଥିଲେ। ପୁରୀରେ ରାଜା ଉପସ୍ଥିତ ହେବାରୁ ବୁଢ଼ା ଲେଙ୍କା ଚୈତନ୍ୟଙ୍କ ଆଗମନ ସମ୍ପର୍କରେ ରାଜାଙ୍କୁ ସମ୍ବାଦ ଦେଲା (କର୍ତ୍ତବ୍ୟ ଦୃଷ୍ଟିରୁ)। କୁମାର ହଟ ଚୈତନ୍ୟଙ୍କ ସଂପର୍କରେ ତଦନ୍ତ (କରଣ) ତାଙ୍କ ହସ୍ତରେ ପାଞ୍ଜି ଦେଲେ ଏବଂ ଚୈତନ୍ୟ ସ୍ୱୟଂ କ୍ଷେତ୍ରରେ ଅବସ୍ଥାନ କରୁଥିବା ସମ୍ବାଦ ଦେଲେ। ସେତେବେଳେ ଚୈତନ୍ୟ ଦକ୍ଷିଣ ଭ୍ରମଣ ସାରି କ୍ଷେତ୍ରରେ ପହଞ୍ଚିଥିଲେ। ରାଜା ଏହା ଶୁଣି 'ହେଉ ହେଲା' କହି ରଥ ଉପରେ ଛେରା ପହଁରା କର୍ତ୍ତବ୍ୟ ସମ୍ପାଦନ କରିବାକୁ ଗଲେ। ରଥ ଉପରୁ ରାଜା ଚୈତନ୍ୟଙ୍କର କୀର୍ତ୍ତନ ନୃତ୍ୟ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ। ରଥ ଆଗେ ଆଗେ କୀର୍ତ୍ତନରତ ଚୈତନ୍ୟଙ୍କ ସହିତ ରାୟ ରାମାନନ୍ଦ, କହ୍ନାଇ ଖୁଣ୍ଟିଆ, ଜଗନ୍ନାଥ, ବଳରାମ, ଯଶୋବନ୍ତ, ସ୍ୱରୂପ ଦାମୋଦର, ଅଚ୍ୟୁତାନନ୍ଦ, ଅନନ୍ତ, ଗଦାଧର ପଣ୍ଡିତ, ଶିବାନନ୍ଦ ସେନ, ଭଉଁଣୀ ଦାସ, ରଘୁ ଅରକ୍ଷିତ ଦାସ ଓ ଅନ୍ୟ ଅନେକ ବିଶିଷ୍ଟ ବ୍ୟକ୍ତି ଥିଲେ।

ରାଜା ଗୋରାକୁ ସମ୍ଭାଷିଲେ ॥ କୀର୍ତ୍ତନ ଦେଖି ତୋଷ ହେଲେ । ୧୪ ।
ବୋଇଲେ ଏ ଭଲ ବେଭାର ॥ ହରି ନାମ ଯେ ଏହୁ ସାର । ୧୫ ।
କୀର୍ତ୍ତନ ଏଥେ କରୁଥିବ ॥ ଏ ତହୁଁ ଆନ ନ କରିବ । ୧୬ ।
ଚୈତନ୍ୟ ବୋଇଲେ ହେ ନୃପ ॥ ତୁମ୍ଭେ ଜଗନ୍ନାଥ ସେବକ । ୧୭ ।
ଏ ତହୁଁ ବଡ଼ କଥା କାହିଁ ॥ ଦେଖିଣ ଧନ୍ୟ ହେଲି ମୁହିଁ । ୧୮ ।
ରାୟଙ୍କୁ ନୃପ ବରଗିଲେ ॥ ଯତିର କଥା ବୁଝ ଭଲେ । ୧୯ ।
କାଶୀ ମିଶ୍ରଙ୍କୁ ହକାଇ ॥ ଚୈତନ୍ୟେ ରଖ ଯତ୍ନ କରି । ୨୦ ।
ନୃପ ଯେ ଏହା ଆଦେଶିଲେ ॥ କାଶୀ ମିଶ୍ର ପୁରେ ରହାଇଲେ । ୨୧ ।
ମନ୍ଦିର ନିକଟ ଏ ସ୍ଥାନ ॥ ଯତି ଉପଯୁକ୍ତ ବଖାଣ । ୨୨ ।
ରାଧାର ଭାବ ଆସ୍ୱାଦନେ ॥ ଜନ୍ମ ହୋଇଲେ ମର୍ତ୍ତ୍ୟ ଧାମେ । ୨୩ ।
କଟିରେ ମେଖଳା ଏ ବାନ୍ଧେ ॥ ପଦକୁ ଘଣ୍ଟି ଅଳେ ଛନ୍ଦେ । ୨୪ ।
ନିତ୍ୟ ଲକ୍ଷେ ନାମ ଜପଇ ॥ ପ୍ରଭାତୁ କୀର୍ତ୍ତନ କରଇ । ୨୫ ।
ସୁଖେ ବଞ୍ଚଇ କୃଷ୍ଣ ରସେ ॥ ଉତ୍ତର ପାରୁଶ ମଣ୍ଡପେ । ୨୬ ।

---

୧୪-୨୨ ରାଜା ରଥ ଉପରୁ ଶ୍ରୀଚୈତନ୍ୟଙ୍କର କୀର୍ତ୍ତନ ଦେଖି ସନ୍ତୋଷ ପ୍ରକାଶ କଲେ । ରାଜା ଚୈତନ୍ୟଙ୍କ ସହିତ ସମ୍ଭାଷଣ କଲେ ଏବଂ କୁଶଳ ପ୍ରଶ୍ନ ଜିଜ୍ଞାସା କଲେ, ଏଠାରେ କୀର୍ତ୍ତନ କରୁଥିବ ବୋଲି କହିଲେ । ଚୈତନ୍ୟ କହିଲେ— ହେ ରାଜା, ତୁମେ ଜଗନ୍ନାଥଙ୍କର ସେବକ । ଏହାଠାରୁ କେଉଁ ବଡ଼ କଥା ଆଉ କିଛି ନାହିଁ । ମୁଁ ତୁମର ସେବାକାର୍ଯ୍ୟ ଦେଖି ଧନ୍ୟ ହେଲି । ରାଜା ମଧ୍ୟ ସେବକ ହୋଇପାରେ, ଏହାହିଁ ଚୈତନ୍ୟଙ୍କର ଆଶ୍ଚର୍ଯ୍ୟ ହେବାର କାରଣ । ରାୟ ରାମାନନ୍ଦଙ୍କୁ ରାଜା ଚୈତନ୍ୟଙ୍କର ଭଲମନ୍ଦ ବୁଝିବା ପାଇଁ ଆଦେଶ ଦେଲେ । କାଶୀ ମିଶ୍ରଙ୍କୁ ଡକାଇ ଚୈତନ୍ୟଙ୍କୁ ସହର ମଧ୍ୟରେ ରଖାଇବା ପାଇଁ କହିଲେ । ରାଜାଙ୍କ ଆଦେଶ ଅନୁସାରେ କାଶୀ ମିଶ୍ରଙ୍କ ଘରେ ଚୈତନ୍ୟଙ୍କର ସୁଖ ସ୍ଥାନ ଲାଗି ବ୍ୟବସ୍ଥା କରାଗଲା । ଶ୍ରୀମନ୍ଦିରର ନିକଟବର୍ତ୍ତୀ ସ୍ଥାନ ହୋଇଥିବା ହେତୁ ଏହା ଚୈତନ୍ୟଙ୍କ ପାଇଁ ଉପଯୁକ୍ତ ସ୍ଥାନ ବୋଲି ଏଭଳି ବ୍ୟବସ୍ଥା କରାଗଲା ।

୨୩-୨୬ ଶ୍ରୀଚୈତନ୍ୟ ଯେ ରାଧା-ଅବତାର— ଏହା ସେତେବେଳେ ଲୋକମାନଙ୍କରେ ପ୍ରଚଳିତ ମତ ରୂପେ ସ୍ୱୀକୃତ ହୋଇଥିଲା । ଗୋଦାବରୀ କୂଳରେ ରାମାନନ୍ଦ-ଚୈତନ୍ୟ ମିଳନ ବେଳେ ରାମାନନ୍ଦ ଏହା ପ୍ରକାଶ କରିଥିଲେ । ଚୈତନ୍ୟଙ୍କ ଜନ୍ମ "ଦୁଷ୍ଟ ନିବାରଣ, ଜଗତ ଉଦ୍ଧାରଣ" ଲାଗି ନୁହେଁ, ବରଂ ନିଜ ଭାବ ଆସ୍ୱାଦନ ଲାଗି ତାଙ୍କର ଜନ୍ମ । ଏହାହିଁ ଚୈତନ୍ୟ-ଅବତାର ସମ୍ପର୍କରେ ନୀଳାଚଳର ମତ । ଚୈତନ୍ୟ କଟିରେ ମେଖଳା ବାନ୍ଧିଥିଲେ ଏବଂ ସେଥିରେ ଘଣ୍ଟି ମାନ ପକାଇ ପଦ ଧ୍ୱନି ଛନ୍ଦୁଥିଲେ ।

ଏଥି ଅନ୍ତରେ ଶୁଣ ଜନେ ॥ ଚୈତନ୍ୟ ବୋଲେ କରୁଣେ । ୨୭ ।
ଯିବି ମୁଁ ଏଥି ଉତ୍ତରକୁ ॥ ଲେଉଟି ଆସିବି କ୍ଷେତ୍ରକୁ । ୨୮ ।
ରାୟ ଯେ ତାହା ସଙ୍ଗେ ଗଲ ॥ କଟକେ ଗୃହକୁ ଅଇଲ । ୨୯ ।
ରେମୁଣା କଟକେଣ ହୋଇ ॥ ଚୈତନ୍ୟ ରାମକେଳି ଯାଇ । ୩୦ ।
ରୂପ ସନାତନକୁ ଭେଟିଲ ॥ ରାଜକାର୍ଯ୍ୟ ଯେ ଛଡ଼ାଇଲ । ୩୧ ।
ତୁମେ ଦୁଇ ଭାଇ ପଣ୍ଡିତ ॥ କୃଷ୍ଣରସକୁ ଯୋଗ୍ୟ ପାତ୍ର । ୩୨ ।
ସେଠାରୁ ଲେଉଟି ଅଇଲେ ॥ କ୍ଷେତ୍ରରେ ଆସିଣ ହୋଇଲେ । ୩୩ ।
ସକଳେ ହେଲେକ ସନ୍ତୋଷ ॥ ରମ ରାୟ ଯେ କାଶୀ ମିଶ୍ର । ୩୪ ।
ଏ ତହୁଁ କିଛୁ ଦିନ ଅନ୍ତେ ॥ ପ୍ରୟାଗ ଯିବାକୁ ଉଦ୍ୟତେ । ୩୫ ।
ଅରଣ୍ୟ ବାଟରେ ସେ ଗଲେ ॥ ପ୍ରୟାଗେ ଯାଇଣ ମିଳିଲେ । ୩୬ ।
ରୂପକୁ ଭେଟିଲେ ସେ ସ୍ଥାନେ ॥ ବିଶ୍ରାମ କଲେ ଦଶ ଦିନେ । ୩୭ ।
ବୋଇଲେ ରୂପକୁ ତୁ ଆସ ॥ ନୀଳାଚଳରେ ପରକାଶ । ୩୮ ।
ଚୈତନ୍ୟ ଲେଉଟି ଅଇଲେ ॥ ନୀଳାଚଳରେ ଆସି ହେଲେ । ୩୯ ।
ରୂପ ଅଇଲେ ଦିନାନ୍ତରେ ॥ ରେମୁଣା ଭଦ୍ରକ ମାର୍ଗରେ । ୪୦ ।
ନୀଳାଚଳରେ ରୂପ ରହେ ॥ କୃଷ୍ଣବର୍ଣ୍ଣ ତା ଦେହକାନ୍ତେ । ୪୧ ।
ଶାସ୍ତ୍ରରେ ତାର ଅନୁରାଗ ॥ ସାଧୁ ବୈଷ୍ଣବରେ ସରାଗ । ୪୨ ।

---

ଏହା ଦ୍ଵାରା ନାମଜପ ସମୟରେ ଗଣନା କାର୍ଯ୍ୟ ସମ୍ପନ୍ନ ହେଉଥିଲା । ସେ ପ୍ରତିଦିନ ଏକ ଲକ୍ଷ ନାମ ଜପ କରୁଥିଲେ ଏବଂ ପ୍ରହରକରୁ କୀର୍ତ୍ତନ କରୁଥିଲେ । କୃଷ୍ଣ ସ୍ମରଣରେ ତାଙ୍କର ନୟନମାନ ଲୋଟୁଥିଲା । ମନ୍ଦିର ପାର୍ଶ୍ୱସ୍ଥ ମଣ୍ଡପରେ ଅନେକ ସମୟରେ ବସି ସେ ନାମ ଜପ କରୁଥିବା ଏଠାରେ ବର୍ଣ୍ଣିତ ।

୨୭-୪୨ ଚୈତନ୍ୟ ତୀର୍ଥାଟନକୁ ଫେରିବାର କିଛିଦିନ ପରେ ଉତ୍ତରକୁ ଯିବାର ପ୍ରସ୍ତାବ କଲେ । ରାୟ ରାମାନନ୍ଦ ଚୈତନ୍ୟଙ୍କୁ ନେଇ କଟକ ପର୍ଯ୍ୟନ୍ତ ଗଲେ ଏବଂ ସେଠାରେ ତାଙ୍କୁ ବିଦାୟ ଦେଲେ । ଚୈତନ୍ୟ ରେମୁଣା ମାର୍ଗରେ ଗଉଡ଼ର ରାମକେଳିରେ ଉପସ୍ଥିତ ହେଲେ । ଏଠାରେ ରୂପ-ସନାତନ ଦୁଇ ଭାଇଙ୍କୁ ଭେଟିଲେ । ସେମାନଙ୍କୁ ରାଜକାର୍ଯ୍ୟ ଛାଡ଼ି ବୈଷ୍ଣବ ଦୀକ୍ଷା ନେବା ପାଇଁ ପରାମର୍ଶ ଦେଲେ । ଚୈତନ୍ୟ ରାମକେଳିରୁ ପ୍ରତ୍ୟାବର୍ତ୍ତନ କରି ନୀଳାଚଳରେ ଉପସ୍ଥିତ ହେଲେ । ରମ ରାୟ, କାଶୀ ମିଶ୍ର ପ୍ରମୁଖ ଚୈତନ୍ୟଙ୍କ ପ୍ରତ୍ୟାବର୍ତ୍ତନରେ ଆନନ୍ଦିତ ହେଲେ । ଏହାର କିଛି ଦିନ ପରେ ଚୈତନ୍ୟ ପ୍ରୟାଗ ଯିବା ପାଇଁ ଉଦ୍ୟତ ହେଲେ । ଏଥର ସେ ଅରଣ୍ୟ ମାର୍ଗରେ ଯାଇ କରି ପ୍ରୟାଗରେ ପହଞ୍ଚିଲେ । ସେଠାରେ ସେ ରୂପଙ୍କୁ ଭେଟିଲେ ଏବଂ ନୀଳାଚଳକୁ ଆସିବା ପାଇଁ ପରାମର୍ଶ ଦେଇ ଫେରିଲେ । ରୂପ କେତେଦିନ ପରେ ରେମୁଣା-ଭଦ୍ରଖ ମାର୍ଗରେ ଆସି ପୁରୀରେ ଉପସ୍ଥିତ ହେଲେ ।

ଚୈତନ୍ୟ ନେଲେ ସ୍ୱରୂପ ପାଶେ || ବୋଇଲେ ରୂପ ଏ ପ୍ରକାଶେ |୪୩|
ଏହାଙ୍କୁ ତତ୍ତ୍ୱ ଶିକ୍ଷା ଦିଅ || ରସର ମର୍ମ ଗତି ବତାଅ |୪୪|
ସ୍ୱରୂପ ରୂପଙ୍କୁ ସମ୍ଭାଷିଲେ || ରସ ତତ୍ତ୍ୱ ସେ ଶିକ୍ଷା ଦେଲେ |୪୫|
ଶାନ୍ତ ସଖ୍ୟ ସେ ବାତ୍ସଲ୍ୟ || ଦାସ୍ୟ ମଧୁର ଭାବ ଶାବଲ୍ୟ |୪୬|
ମୋଟ୍ଟାୟିତ କଳକିଞ୍ଚିତ || ଆଉ ଯେତେ ସେତେକ ତତ୍ତ୍ୱ |୪୭|
ଗମ୍ଭୀର ଏ ପରମ ତତ୍ତ୍ୱ || ଲୋକରେ ଏହା ଅପ୍ରକଟ |୪୮|
ସ୍ୱରୂପ ସେ ରସତତ୍ତ୍ୱ ଦେଲେ || ରୂପ ସେ ସବୁଟି ବୁଝିଲା |୪୯|
ଅଙ୍ଗର ଷୋଳ ଭାବ ଜାଣି || ଜୀବ ବୁଝିଲ ପରମାଣି |୫୦|
ରୂପ ଦଶମାସ ରହିଲ || ସ୍ୱାମୀ ଙ୍କୁ ଭାଗବତ ଶୁଣିଲ |୫୧|
ସ୍ୱାମୀର ଯେତେକ ସେ ଭାବ || ଚେପଥ ପ୍ରେମ ସ୍ୱଭାବ |୫୨|
ଭାଗବତ ପଦ ସେ ପଢ଼ିଲ || ମଧୁରୁ ଲେଖକ ହୋଇ |୫୩|
ସ୍ୱାମୀ ତହିଁ ଭରତ ତତ୍ତ୍ୱ || ଜାଣି ସେ ପରମ ସନ୍ତୋଷ |୫୪|
ଲେଖାଇ ନେଲ ପୋଥି ଯେତେ || ବ୍ରହ୍ମ ସହିତ କର୍ଣ୍ଣ ମୁଖେ |୫୫|
କାଶୀ ମିଶ୍ର ଯେ ନ ସହିଲେ || ରୂପଙ୍କୁ ପଠାଅ ବୋଇଲେ |୫୬|
ଯେତେକ ମ୍ଲେଚ୍ଛ ଅଚରଣ || ନ କର ଜଗନ୍ନାଥ ଦର୍ଶନ |୫୭|

---

୪୩-୫୦ ରୂପ ଶିକ୍ଷା ପ୍ରସଙ୍ଗ ଏଠାରେ ବର୍ଣ୍ଣିତ। ରୂପ ବଙ୍କାସ୍ତ ଓ ସେ ଦେଖିବାକୁ ଭଲ। ରୂପଙ୍କୁ ନେଇ ଚୈତନ୍ୟ ସ୍ୱରୂପ ଦାମୋଦରଙ୍କ ସହିତ ପରିଚୟ କରାଇ ଦେଇଥିଲେ ଏବଂ ରୂପଙ୍କୁ ରସତତ୍ତ୍ୱମାନ ଶିକ୍ଷା ଦେବା ପାଇଁ ସ୍ୱରୂପ ଦାମୋଦରଙ୍କୁ ଅନୁରୋଧ କଲେ। ସ୍ୱରୂପ ରୂପଙ୍କୁ ବୈଷ୍ଣବ ରସତତ୍ତ୍ୱ ଶିକ୍ଷା ଦେଲେ। ରୂପ ଜଣେ ବିଶିଷ୍ଟ ବିଦଗ୍ଧ ପଣ୍ଡିତ। ତେଣୁ ସ୍ୱରୂପ ଦାମୋଦରଙ୍କ ପକ୍ଷରେ ବୈଷ୍ଣବ ରସତତ୍ତ୍ୱକୁ ଗୋପନ ରଖିବାର ଅବକାଶ ନ ଥିଲା।

୫୧-୬୧ ରୂପ ଜଗନ୍ନାଥ ଦାସଙ୍କ ଠାରୁ ଭାଗବତର ଭକ୍ତିତତ୍ତ୍ୱ ଶିକ୍ଷା କଲେ। ଜଗନ୍ନାଥ ଦାସଙ୍କ ଭକ୍ତିଭାବରେ ବିହ୍ୱଳତା, ବେପଥୁ ରୋମାଞ୍ଚ ପ୍ରଭୃତି ରୂପଙ୍କୁ ମୁଗ୍ଧ କଲା। ରୂପଙ୍କ ସମ୍ପର୍କରେ କାଶୀ ମିଶ୍ର କେତେକ ଅଭିଯୋଗ କଲେ— ୧) ରୂପଙ୍କର ଜଗନ୍ନାଥଙ୍କୁ ଦର୍ଶନ ନ କରିବା ୨) ଜପତପ ପ୍ରତି ଅନାସକ୍ତି ଓ ୩) ମ୍ଲେଚ୍ଛ ରାଜାର ଅଧୀନେ ମନ୍ତ୍ରୀ ଥିବା ପ୍ରଭୃତି ଏଭଳି ଅଭିଯୋଗର କାରଣ। ନୀଳାଚଳରୁ ଚାଲିଯାଇ ବୃନ୍ଦାବନରେ ପୀଠ ଗଢ଼ିବା ଓ ଗ୍ରନ୍ଥ ରଚନା କରିବା ଲାଗି ଚୈତନ୍ୟ ରୂପଙ୍କୁ ନିର୍ଦ୍ଦେଶ ଦେଲେ ଏବଂ ସେହି ଇଙ୍ଗିତ ବଳରେ ରୂପ ନୀଳାଚଳରୁ ଚାଲିଗଲେ।

ମ୍ଳେଚ୍ଛ ରାଜାର ମନ୍ତ୍ରୀ ଏହୁ || ଏଥେ ଆଣଇ ଭକ୍ତ କହୁ ।୫୮।
ଚୈତନ୍ୟ ବୋଲେ ରୂପ ଯାଅ || ଏଥେ ରୁ ଆଜ୍ଞଟି ନ ରହ ।୫୯।
ବୃନ୍ଦାବନରେ ପୀଠ ଗଢ଼ || ଗ୍ରନ୍ଥ ରଚ ରୂ ମଠ ଦୃଢ଼ ।୬୧।
ରୂପ ଚଳିଲ ବୃନ୍ଦାବନେ || ଏବେଅଛି ନ ଘଟିଲ କ୍ଷଣେ ।୬୦।
ରାଜାର ଅଙ୍କ ଚଉତିଂଶେ || ଉତ୍କଳୁ ସନ୍ନ୍ୟାସୀଏ ଅସେ ।୬୨।
ନାମ ତା ଖୋଲଆ କବୀର || ଭକ୍ଷା ବସନ ଦେନ୍ତେ ତାର ।୬୩।
ତୁମ୍ଭୁରା ଏକ ଧରି ହାତ || ମଧୁର ସ୍ୱରେ ଗାଏ ଗୀତ ।୬୪।
ଜଗନ୍ନାଥରେ ଭକ୍ତ ତାର || ମଠ ତା ବଢ଼ାଇ ଉଦାର ।୬୫।
ସ୍ୱାମୀ ସେ ଭଜନ ଶୁଣିଲେ || ପ୍ରେମେ ତାହାକୁ କୋଳ କଲେ ।୬୬।
ବୋଇଲେ ମନୁଷ୍ୟ ସକଳ || ସମାନ ଅଟେ ଏ ଶମ୍ଭୁଳ ।୬୭।
କାବା ଚଣ୍ଡାଳ କାବା ଦ୍ୱିଜ || ସୃଷ୍ଟିରେ ସମାନ ଯେ ଦ୍ୱିଜ ।୬୮।
କେବଳ ନାମେ ମଠ ଥିଲେ || କୃଷ୍ଣ ମିଳଇ ଅବହେଳେ ।୬୯।
ମୁକତି ବାଞ୍ଛା ନର୍କ ତୁଲ୍ୟ || ଇଷ୍ଟ ସେବାଟି ଅଟେ ମୂଳ ।୭୦।
କବୀର ସନ୍ତୋଷ ଲଭିଲେ || ଜଗନ୍ନାଥରେ ମଠ ଦେଲେ ।୭୧।
ଚଳିଲେ ମାସକ ଅନ୍ତରେ || ରାଜାର ଚବିଶ ଅଙ୍କରେ ।୭୨।
ଉତ୍କଳୁ ଆସେ ସନାତନ || ପ୍ରଭୁର ବଡ଼ ପ୍ରିୟ ଜାଣ ।୭୩।

---

୬୨-୭୨ ରାଜାଙ୍କ ଅଙ୍କ ଚଉତିଂଶ = ଖ୍ରୀ: ୧୫'୬। ଏହି ବର୍ଷ ଉତ୍କଳରୁ ଜଣେ ବୟସ୍କ ବଉଦ ପଣ୍ଡିତ ସନ୍ନ୍ୟାସୀ ଆସି ନୀଳାଚଳରେ ପହଞ୍ଚିଲେ। ତାଙ୍କ ନାମ ଖୋଲିଆ କବୀର। ସେ କାଳରେ ମୁସଲମାନ ଫକୀର। ମୁସଲମାନ ଫକୀରଙ୍କୁ "କଲନ୍ଦର" କୁହାଯାଏ। 'କଲନ୍ଦର'ରୁ ଓଡ଼ିଆରେ 'ଖୋଲିଆ' ହୋଇଛି। ସେ ହାତରେ ଏକ ତୁମ୍ବୁରା (ଏକ ପ୍ରକାର ବାଦ୍ୟଯନ୍ତ୍ର) ଧରିଥିଲେ ଓ ମଧୁର ସ୍ୱରରେ ଗୀତ ଗାଉଥିଲେ। ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କ ଅଚଳା ଭକ୍ତି। ସ୍ୱାମୀ ଜଗନ୍ନାଥ ଦାସ ତାଙ୍କର ଗୀତ ଶୁଣି ଓ ଭକ୍ତି ଭାବ ଦେଖି ପ୍ରେମରେ କୋଳ କଲେ। ଦାସେ କବୀରଙ୍କ ସହିତ ଆଳାପ ଆଲୋଚନା ବେଳେ କହିଲେ — ୧) ଭଗବାନଙ୍କ ସୃଷ୍ଟିରେ ସକଳ ମନୁଷ୍ୟ ସମାନ। ଚଣ୍ଡାଳ ଓ ଦ୍ୱିଜ ମଧ୍ୟରେ କୌଣସି ଭେଦନାହିଁ। ୨) ନାମ ଭଜନ ଦ୍ୱାରା ଭଗବତ୍ ପ୍ରାପ୍ତି ସହଜ ହୁଏ। ୩) ଭକ୍ତ କଦାପି ମୁକ୍ତି ବାଞ୍ଛା କରିବା ଉଚିତ ନୁହେଁ। ମୁକ୍ତି ବାଞ୍ଛା ନର୍କ ତୁଲ୍ୟ ଘୃଣ୍ୟ ଓ ପରିତ୍ୟାଜ୍ୟ। ୪) ଇଷ୍ଟ ସେବା ବଳରେ ପ୍ରାଣୀର ସକଳ ବାଞ୍ଛା ପୂର୍ଣ୍ଣ ହୁଏ। କବୀର ଏଥିରେ ସନ୍ତୋଷ ପ୍ରକାଶ କଲେ ଏବଂ ଏଠାରେ ଏକ ମାସ ରହିଲା ପରେ ପ୍ରତ୍ୟାବର୍ତ୍ତନ କଲେ।

୭୩-୮୧ ସନାତନ ଗୋସ୍ୱାମୀ ନୀଳାଚଳରେ ପଦାର୍ପଣ କଲେ। ଏ ଥିଲେ ବଙ୍ଗର ମ୍ଳେଚ୍ଛ ରାଜା ହୁସେନ ସାହଙ୍କ ମନ୍ତ୍ରୀ। ରାଜକାର୍ଯ୍ୟ ଛାଡ଼ି ବୈଷ୍ଣବ ଦୀକ୍ଷା

ମ୍ଳେଚ୍ଛ ରାଜାର ମନ୍ତ୍ରୀ ଥିଲେ ॥ ଡାଲେ ବଇଷ୍ଣବ ହୋଇଲେ ।୭୪।
ଶରୀରେ ତାର ଦୁଷ୍ଟ ବ୍ରଣ ॥ ଆସନ୍ତ ମୂର୍ଚ୍ଛି ବ୍ୱ ଦେଲେଣ ।୭୫।
ରଥ ତଳେ ଦେହୁ ପଡ଼ିଲ ॥ ପ୍ରାଣ ହାରାଇବ ବୋଇଲ ।୭୬।
ସ୍ୱରୂପ ତୁଳସୀ ଅଚ୍ୟୁତ ॥ ଅନନ୍ତ କହ୍ନାଇ ଯଶୋବନ୍ତ ।୭୭।
ଉଠାଇ ତୋଳଣ ଧଇଲେ ॥ କେତେ କର୍ମ କରୁ ବୋଇଲେ ।୭୮।
କୀର୍ତ୍ତନ ଶବ୍ଦ ଗବ୍ଦ ନାଦେ ॥ ନ ଜାଣେ କେହୁ ଏ ସମ୍ବାଦେ ।୭୯।
ପ୍ରଭୁ ଜାଣିଲ ତରଜଲ ॥ ଏ କଷ ତୋ ଦେହର ଭଲ ।୮୦।
ତୋ ତନୁ ପଣ୍ଡିତ କାହିଁଚୁ ॥ ଦେହକୁ ଜୀବନ ମୁରୁଛୁ ।୮୧।
ଏକ ବରଷ ସେ ରହିଲ ॥ ଅନେକ ତତ୍ତ୍ୱ ସେ ବୁଝିଲ ।୮୨।
ସ୍ୱାମୀ ତନୁ ଭଗତ ତତ୍ତ୍ୱ ॥ ଶିଖିଲ ହେତୁ ଅପ୍ରମିତ ।୮୩।
କୃଷ୍ଣତତ୍ତ୍ୱ ସେ ସୃଷ୍ଟି ତତ୍ତ୍ୱ ॥ ଜୀବ ତତ୍ତ୍ୱ ସେ ଲୀଳାତତ୍ତ୍ୱ ।୮୪।
ଜୀବ ଓ ବ୍ରହ୍ମ ଏକ ନୋହେ ॥ ଜୀବ କୃଷ୍ଣର ଦାସ କହେ ।୮୫।
ଭେଦାଭେଦ ତତ୍ତ୍ୱ ବଖାଣେ ॥ ସନାତନ ସେ ମୌନେ ଶୁଣେ ।୮୬।
କୃଷ୍ଣର ଶକ୍ତିମାନ କହୁ ॥ ଚିତ୍‌ଶକ୍ତି ଜୀବଶକ୍ତି ବୋଲଇ ।୮୭।
ମାୟା ଶକ୍ତି ସେ ଅଛୁ ଏତ ॥ ସ୍ୱାମୀ ବୁଝାଇଲେ ଅନେକ ।୮୮।
ଲୀଳାବତାର ଗୁଣାବତାର ॥ ଯୁଗ ଅବତାର ବେଶର ।୮୯।
କୃଷ୍ଣର ଐଶ୍ୱର୍ଯ୍ୟ ସେ ସ୍ୱ ॥ ମାଧୁର୍ଯ୍ୟ ସ୍ୱବହି ସ୍ୱଭାବ ।୯୦।

---

ନେଇଥିଲେ । ପୂର୍ବରେ ସନ୍ତହ୍ନିଲ ବେଳକୁ ତାଙ୍କ ଶରୀରରେ ଦୁଷ୍ଟ ବ୍ରଣମାନ ବାହାରି ଯନ୍ତ୍ରଣା ଦେଉଥିଲା । ଜୀବନ ହାରିବାର ସଙ୍କଳ୍ପ ନେଇ ସେ ରଥ ଚକ ତଳେ ପଡ଼ିଥିଲେ । ମାତ୍ର କେତେକାଣ୍ଡରେ ସାଥୀରେ ସେ ସ୍ଥଳରେ ଉପସ୍ଥିତ ଥିବା ସ୍ୱରୂପ ଦାମୋଦର, ତୁଳସୀ ପଣ୍ଡା, ଅଚ୍ୟୁତାନନ୍ଦ, ଅନନ୍ତ, କହ୍ନାଇ ଖୁଣ୍ଟିଆ, ଯଶୋବନ୍ତ ପ୍ରମୁଖ ବୈଷ୍ଣବମାନେ ସନାତନଙ୍କୁ ରଥ ତଳ ତଳୁ ଟେକି ଉଠାଇଲେ । କୀର୍ତ୍ତନ ଓ ଘଣ୍ଟ ମୃଦଙ୍ଗ ଭେରୀ ତୂରୀ ନାଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଉଥିବାରୁ ସନାତନଙ୍କ କଳ୍ପିତ ଆତ୍ମହତ୍ୟାର ସମ୍ବାଦ ଅନ୍ୟ କେହୁ ଜାଣିଲେ ନାହିଁ । ଶ୍ରୀଚୈତନ୍ୟ ଏ ବିଷୟ ଅବଗତ ହେଲେ ଓ ସନାତନଙ୍କ ପ୍ରତି ବିରକ୍ତି ଭାବ ପ୍ରକାଶ କଲେ । ସନାତନ ଜ୍ଞାନୀ, ଗୁଣୀ ଓ ଅଦ୍ୱିତୀୟ ପଣ୍ଡିତ । ମାତ୍ର ତାଙ୍କର ଆତ୍ମହତ୍ୟା ଉଦ୍ୟମ ଚୈତନ୍ୟଙ୍କର ଅସହ୍ୟ ଥିଲା । ସନାତନ ନୀଳାଚଳରେ ବୈଷ୍ଣବମାନଙ୍କର ଆଦର ଆତିଥ୍ୟ ଲଭ କରି ଆଶ୍ୱସ୍ତ ହେଲେ । ସେ ଏଠାରେ ଏକାଦିକ୍ରମେ ଏକବର୍ଷ ପର୍ଯ୍ୟନ୍ତ ରହିଲେ ।

୮୨-୯୯ ତାଙ୍କର ଏଠାରେ ଅବସ୍ଥାନ କାଳରେ ସେ ସ୍ୱାମୀ ଜଗନ୍ନାଥ ଦାସଙ୍କ ଠାରୁ ଭକ୍ତିତତ୍ତ୍ୱ ଶିକ୍ଷା କଲେ । କୃଷ୍ଣତତ୍ତ୍ୱ, ସୃଷ୍ଟିତତ୍ତ୍ୱ, ଜୀବତତ୍ତ୍ୱ ଓ ଲୀଳାତତ୍ତ୍ୱ

ମଧୁର ସ୍ୱରର ଭଜନ ॥ ସ୍ୱାମୀ କଲେକ ସେ ବଖାଣ ।୯୧।
ମଧୁର ଅଷ୍ଟଇ ସାଧନ ॥ ଶ୍ରେଷ୍ଠ ସେ ବୋଲଇଛି ପୁଣ ।୯୨।
ଶ୍ରେଷ୍ଠରେ କୃଷ୍ଣର ପ୍ରକାଶ ॥ ମନୁଷ୍ୟ ଲୀଳା ହିଁ ସରସ ।୯୩।
କାମ ଗାୟତ୍ରୀ ମନ୍ତ୍ର ପଢ଼ ॥ କୃଷ୍ଣରେ କର ମନ ଦୃଢ଼ ।୯୪।
ବଇଧି ମାର୍ଗକୁ ଛାଡ଼ିଣ ॥ ରାଗ ମାର୍ଗେ କର ଭଜନ ।୯୫।
ବୈଷ୍ଣବ ମୁକତି ନ ବାଞ୍ଛି ॥ କୃଷ୍ଣର ଦାସରେ ବାଞ୍ଛିଇ ।୯୬।
ଯା ତହୁଁ କୃଷ୍ଣ ପ୍ରାପ୍ତ ହୋଇ ॥ ମନର ସଂଶୟ ଛୁଟଇ ।୯୭।
ପ୍ରଭୁ ବୋଇଲେ ଏଥୁ ଯାଅ ॥ ବୃନ୍ଦାବନେ ପୀଠ କରଅ ।୯୮।
ବଳାଇ ତହୁଁ ସନାତନ ॥ ଏକ ବରଷ ଅନ୍ତରେଣ ।୯୯।

---

ସଂପର୍କୀୟ ସାଧ୍ୟୋପାସ୍ୟ ଭକ୍ତିତତ୍ତ୍ୱ ସେ ସ୍ୱାମୀ ଜଗନ୍ନାଥ ଦାସଙ୍କ ଠାରୁ ଶିକ୍ଷା କଲେ। ଜଗନ୍ନାଥ ଦାସଙ୍କ ବକ୍ତବ୍ୟ ମଧ୍ୟରେ ଭେଦାଭେଦ ତତ୍ତ୍ୱ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶିତ ହୋଇଛି। ଜୀବ ଓ ବ୍ରହ୍ମ ଏକ କୃହନ୍ତି—ଉଭୟ ମଧ୍ୟରେ ଭେଦ ରହିଅଛି। ଜୀବ ହେଉଛି ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଦାସ। ପରବର୍ତ୍ତୀ ସମୟରେ ସନାତନାଦି ଷଡଗୋସ୍ୱାମୀ ବୃନ୍ଦାବନରେ ପୀଠ ଗଢ଼ି ନୀଳାଚଳରୁ ସ୍ୱାମୀ ଜଗନ୍ନାଥ ଦାସ ଓ ରାୟ ରାମାନନ୍ଦଙ୍କ ଠାରୁ ଶିକ୍ଷା କରିଥିବା ଏ ସମସ୍ତ ତତ୍ତ୍ୱକୁ ସଗଠିତ ରୂପ ଦେଲେ ଓ ଏହାକୁ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ନାମରେ ଘୋଷଣା କଲେ ଏବଂ ଏହାକୁ ଗୌଡ଼ୀୟ ବୈଷ୍ଣବ ଧର୍ମର ମୂଳତତ୍ତ୍ୱ ରୂପେ ପ୍ରତିପାଦନ କଲେ। ନୀଳାଚଳର ନାମଗନ୍ଧ ପର୍ଯ୍ୟନ୍ତ ଏଥି ସହିତ ସଂଯୁକ୍ତ ହୋଇପାରିଲା ନାହିଁ। ମାତ୍ର ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ଯେ ନୀଳାଚଳରୁ ଉଦ୍ଭୂତ ହୋଇଥିଲା, ଏହାର ନିର୍ଦ୍ଦିଷ୍ଟ ପ୍ରମାଣ ମାଧବ ପଟ୍ଟନାୟକ ଏଠାରେ ବର୍ଣ୍ଣନା କରିଛନ୍ତି।

ଶ୍ରୀକୃଷ୍ଣଙ୍କ ଶକ୍ତି ସମ୍ପର୍କରେ ଚିତ୍‌ଶକ୍ତି, ଜୀବଶକ୍ତି ଓ ମାୟାଶକ୍ତିର ଉଲ୍ଲେଖ କଲେ ସ୍ୱାମୀ ଜଗନ୍ନାଥ ଦାସ। ଲୀଳାବତାର, ଗୁଣାବତାର ଓ ଯୁଗାବତାର ସମ୍ପର୍କୀୟ ତତ୍ତ୍ୱ ମଧ୍ୟ ସନାତନ ଗୋସ୍ୱାମୀଙ୍କ ନିକଟରେ ପ୍ରକାଶ କଲେ। 'ମଧୁର ରସ ଉପାସନା' ନୀଳାଚଳରେ ଜଗନ୍ନାଥଙ୍କ ଦ୍ୱାରା ସଗଠିତ ରୂପ ଲାଭ କରିଥିଲା। ଶ୍ରୀକୃଷ୍ଣଙ୍କ ଶ୍ରେଷ୍ଠ ପ୍ରକାଶ ମନୁଷ୍ୟ ଲୀଳାରେ ସାଧିତ ଓ ଏଥି ଲାଗି ଦ୍ୱିଭୁଜ ମୂର୍ତ୍ତି ପାଇଁ ଶ୍ରୀକୃଷ୍ଣ ହିଁ ଉପାସ୍ୟ—ଏ ତତ୍ତ୍ୱ ମଧ୍ୟ ଜଗନ୍ନାଥ ଦାସଙ୍କ ମୁଖରୁ ନିଃସୃତ ହୋଇଥିଲା। କାମଗାୟତ୍ରୀ ମନ୍ତ୍ରପାଠ ଓ ବୈଧିମାର୍ଗ ତ୍ୟାଗ କରି ରାଗ ମାର୍ଗରେ କୃଷ୍ଣ ଭଜନକୁ ଶ୍ରେଷ୍ଠ ପନ୍ଥା ରୂପେ ପ୍ରତିପାଦନ କରି ବୈଷ୍ଣବ ଧର୍ମ ଜଗତରେ ଏକ ବୈପ୍ଳବିକ ପରିବର୍ତ୍ତନ ସମ୍ବିଧାନ କରିଥିବା ଏହା ଜଗନ୍ନାଥ ଦାସ ଓ ରାୟ ରାମାନନ୍ଦଙ୍କର କୃତିତ୍ୱ। ଏ ସମ୍ପର୍କରେ ଏଥିରୁ ନିଃସନ୍ଦେହ ତଥ୍ୟ ମିଳେ। ଏକବର୍ଷ ପରେ ଶ୍ରୀଚୈତନ୍ୟ ସନାତନଙ୍କୁ ବୃନ୍ଦାବନକୁ ପ୍ରେରଣ କଲେ।

ହଦରୁ ଅଇଲ ବଲ୍ଲଭ || ଗୋପାଳେ ତାର ଭକ୍ତିଭାବ ।୧୦୦।
ସ୍ୱାମୀ ଭୁଲେଣ ତାର ଭେଟ || କରନ୍ତି ଭାଗବତ ପାଠ ।୧୦୧।
ଶ୍ରୀଜଗନ୍ନାଥେ ତାର ମଠ || ଦର୍ଶନେ ସନ୍ତୋଷ ଲଭନ୍ତ ।୧୦୨।
ଗୋପୀଜନ ବଲ୍ଲଭଟି ଏ || ରାଧାକୃଷ୍ଣ ନେଲ ବପୁଏ ।୧୦୩।
ବଲ୍ଲଭ ସନ୍ନ୍ୟାସୀ ବୁଝିଲେ || ଭଗତ ଅରପିଲ ବୋଲେ ।୧୦୪।
ମୋର ସ୍ୱରୂପ ଗୋପୀଜନ || ବଲ୍ଲଭ ଜଗନ୍ନାଥ ଜାଣ ।୧୦୫।
ରଥକୁ ଆସି ମାସ ଦୁଇ || ରହିଲେ ବଲ୍ଲଭ ଗୋସାଇଁ ।୧୦୬।
କୀର୍ତ୍ତନ ଦେଖିଣ ପ୍ରଭୁର || ସନ୍ତୋଷ ଲଭଇ ଅପାର ।୧୦୭।
ଇଷ୍ଟ ଗୋଷ୍ଠୀରେ ଆସି ହେଲେ || ବହୁତ ତତ୍ତ୍ୱ ସମଜଲେ ।୧୦୮।
ଏଥୁ ଅନ୍ତରେ ଶୁଣ ଭବେ || ରାଜାର ଅଙ୍କ ସପ୍ତବିଂଶେ ।୧୦୯।
ଦିନେ ବସିଣ ଏକାନ୍ତରେ || ପ୍ରଭୁ ସ୍ୱାମୀଙ୍କ ପକ୍ଷରେ ।୧୧୦।
ସିଦ୍ଧାନ୍ତ ବାର୍ତ୍ତା ମୋତେ କହ || ତୋ ତହୁଁ ଭିନ୍ନ ନାହିଁ ଦେହ ।୧୧୧।
ସ୍ୱାମୀ ବୋଇଲେ ଭଲ ହେଲ || ପ୍ରଭୁ ବୋଲନ୍ତି କହ ଭଲ ।୧୧୨।

---

୧୦୦-୧୦୮ ଶ୍ରୀବଲ୍ଲଭାଚାର୍ଯ୍ୟଙ୍କ ନୀଳାଚଳ ଆଗମନ ପ୍ରସଙ୍ଗ ଏଠାରେ ବର୍ଣ୍ଣିତ । ଏହା ବୋଧହୁଏ ଖ୍ରୀ: ୧୫୧୬ ପରବର୍ତ୍ତୀ ଘଟଣା; ୧୫୧୭ ବା ୧୫୧୮ ହୋଇପାରେ । ଜଗନ୍ନାଥ ଦାସଙ୍କ ସହିତ ବଲ୍ଲଭାଚାର୍ଯ୍ୟଙ୍କର ଆଳାପ ଆଲୋଚନା ଓ ଭାଗବତ ତତ୍ତ୍ୱ ଚର୍ଚ୍ଚା ସମ୍ପର୍କୀୟ ବିବରଣୀ ଏଥିରୁ ମିଳେ । ବଲ୍ଲଭାଚାର୍ଯ୍ୟ ଥିଲେ ବାଳଗୋପାଳ ଉପାସକ । ମାତ୍ର ନୀଳାଚଳକୁ ଆସି ଜଗନ୍ନାଥ ଦାସ ପ୍ରମୁଖ ଖ୍ୟାତ ବୈଷ୍ଣବଙ୍କ ସମ୍ପର୍କରେ ଆସିଲା ପରେ ସେ ଗୋପୀଜନ ବଲ୍ଲଭ ଶ୍ରୀଜଗନ୍ନାଥଙ୍କ ପଦେ ଭକ୍ତି ଅର୍ପଣ କଲେ । ରଥଯାତ୍ରା ବେଳକୁ ଆସି ସେ ଏଠାରେ ଦୁଇମାସ ରହିଲେ । ଶ୍ରୀଚୈତନ୍ୟଙ୍କ କୀର୍ତ୍ତନ ନୃତ୍ୟ ଦେଖି ସେ ସନ୍ତୋଷ ଲାଭ କଲେ । ପଞ୍ଚସଖା, ରାୟ ରାମାନନ୍ଦ ଓ ଶ୍ରୀଚୈତନ୍ୟଙ୍କ ଗହଣରେ ଇଷ୍ଟଗୋଷ୍ଠୀରେ ଯୋଗଦେଇ ସେ ଅନେକ ବିଷୟରେ ତାତ୍ତ୍ୱିକ ଆଲୋଚନା କରିଥିବା ଏଥିରୁ ଜଣାପଡ଼ଏ ।

୧୦୯-୧୨୯ ରାଜାଙ୍କ ୨୭ ଅଙ୍କ = ଖ୍ରୀ: ୧୫୧୮ । ସ୍ୱାମୀ ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟ ଅଭେଦ ଦ୍ୱୈତ ସୂତ୍ରରେ ଆବଦ୍ଧ ଥିଲେ ଏବଂ ଏହା କେତେକ ବଙ୍ଗୀୟ ଭକ୍ତଙ୍କର ଈର୍ଷା ଓ ମନୋମାଳିନ୍ୟର କାରଣ ଥିଲା । ଦୁହିଁଙ୍କ ମଧ୍ୟରେ ଭିନ୍ନ ଥିଲା କେବଳ ଦେହ; ଅନ୍ୟଥା ଆତ୍ମିକ ଭାବରେ ଦୁହେଁ ଥିଲେ ଏକ ଓ ଅଭିନ୍ନ । ଏ ଭଳି ଅଭେଦ ତାଦାତ୍ମ୍ୟ ଓ ବିରଳ ସଖ୍ୟ ଦୁର୍ଲ୍ଲଭ । ଦିନେ ଚୈତନ୍ୟ ଜଗନ୍ନାଥଙ୍କୁ ପୂର୍ବ ସିଦ୍ଧାନ୍ତ ପ୍ରସଙ୍ଗ ଜିଜ୍ଞାସା କଲେ । ଚୈତନ୍ୟଙ୍କ ଜନ୍ମ ଶ୍ରୀକୃଷ୍ଣଙ୍କ ହୃଦୟରୁ ଓ ତାଙ୍କର ଜନ୍ମ ରାଧାଙ୍କ ହୃଦୟରୁ ବୋଲି ଜଗନ୍ନାଥ ଦାସ ପ୍ରକାଶ କଲେ । ଏଥିରେ ଚୈତନ୍ୟ ଏତେ ମୁଗ୍ଧ ହେଲେ ଯେ ନିଜ କାନ୍ଧରୁ

ସ୍ୱାମୀ ଭୁଞ୍ଜଇ ଏକାନ୍ତରେ || ଥିଲେକ ରାଧା ପାର୍ଶ୍ୱରେ ।୧୧୩।
କୃଷ୍ଣ ହୁଁ ରାଧା ନୋହେ ଭିନ୍ନ || ଅଛଇ ଏକାନ୍ତ ଭାବେଣ ।୧୧୪।
ସଚ୍ଚିଦାନନ୍ଦ ଯେ ସ୍ୱରୂପ || ରାଧା ସ୍ୱରୂପ ଏକ ଦେହ ।୧୧୫।
ରାଧାଙ୍କୁ ଅନାଇ ହସିଲ || କୃଷ୍ଣ ହାସ ସୁଧା ଝରିଲ ।୧୧୬।
କୃଷ୍ଣର ହାସୁ ତୋ ଜନମ || ରାଧା ହାସରୁ ମୋର ଜନ୍ମ ।୧୧୭।
କହିଲ ପୂର୍ବ ଅଙ୍ଗ କଥା || ଏ ତତ୍ତ୍ୱ ନୋହଇ ଅନ୍ୟଥା ।୧୧୮।
ପ୍ରଭୁ ଯେ ପ୍ରେମେ ଆଲିଙ୍ଗିଲ || ଏ ଅତି ବଡ଼ଟି ବୋଇଲ ।୧୧୯।
ତୋହର ମୋହର ଏକ ପ୍ରାଣ || ଦେହଟି ମାତ୍ରକ ଯେ ଭିନ୍ନ ।୧୨୦।
ଅତିବଡ଼ ଏ କଥା କହୁ || ଅତିବଡ଼ ହେଲୁ ଆଜହୁଁ ।୧୨୧।
କାନ୍ଧରୁ ଉତ୍ତରୀ କାଢ଼ିଲ || ସ୍ୱାମୀ ମସ୍ତକେ ଭିଡ଼ିଦେଲ ।୧୨୨।
ବୋଲେ ଏ ଅତି ବଡ଼ପଣ || ସ୍ୱାମୀ ତୁ ମୋହର ପରାଣ ।୧୨୩।
ପ୍ରଭୁ ବୋଇଲ ସ୍ୱରୂପକୁ || ଏ ଅତିବଡ଼ ବୋଲିବାକୁ ।୧୨୪।
ଆଉ ଯେତେକ ଭକ୍ତ ମେଳ || ପ୍ରଭୁ ଅତିବଡ଼ ପ୍ରସ୍ତରେ ।୧୨୫।
କାଶୀ ମିଶ୍ର ଯେ ରାମ ରାୟ || ବକ୍ରେଶ୍ୱର ଅଚ୍ୟୁତ ବେଢ଼ାୟ ।୧୨୬।
ଅନନ୍ତ ଯଶୋବନ୍ତ ମେଳେ || ପ୍ରଭୁ ଏ ବାର୍ତ୍ତା ପ୍ରକାଶିଲେ ।୧୨୭।
ସକଳେ କଲେ ଅଙ୍ଗୀକାର || ଏ ଅତିବଡ଼ର ବେଭାର ।୧୨୮।
ଅତିବଡ଼ କଥା କହିଲ || ଆଜହୁଁ ଅତିବଡ଼ ହେଲ ।୧୨୯।
ଏଥି ଅନ୍ତରେ ଆନ ରସ || ଶୁଣି ସୁଜନେ ହୁଅ ତୋଷ ।୧୩୦।
ବଳରାମ ଦାସ ବେଳକ || ମହାପୁରୁଷ ଅଟେ ସେହୁ ।୧୩୧।
ସୋମନାଥର ସୁତ ସେ || ବେଦାନ୍ତ ତତ୍ତ୍ୱ ସେ ପ୍ରକାଶେ ।୧୩୨।

---

ଉତ୍ତରୀୟ କାଢ଼ି ଦାସଙ୍କ ମସ୍ତକରେ ଗିରେପା ବାନ୍ଧି ଦେଲେ । କହିଲେ— ଏହା ଅତିବଡ଼ କଥା । ତୁମେ ଏ ଅତିବଡ଼ କଥା କହିଲ । ତେଣୁ ତୁମେ ଆଜିଠାରୁ ଅତିବଡ଼ ହେଲ । ସ୍ୱରୂପ ଦାମୋଦର, କାଶୀ ମିଶ୍ର, ରାୟ ରାମାନନ୍ଦ, ଅନନ୍ତ, ଯଶୋବନ୍ତ, ବଳରାମ, ଅଚ୍ୟୁତ ପ୍ରମୁଖଙ୍କ ନିକଟରେ ଶ୍ରୀଚୈତନ୍ୟ, ଜଗନ୍ନାଥ ଦାସଙ୍କ ଅତିବଡ଼ ପଣ ପ୍ରକାଶ କଲେ ଏବଂ ଜଗନ୍ନାଥ ଦାସଙ୍କୁ 'ଅତିବଡ଼' ବୋଲି ସମସ୍ତେ ସ୍ୱୀକାର କଲେ । ଶ୍ରୀଚୈତନ୍ୟ ନୀଳାଚଳରେ ଜଗନ୍ନାଥ ଦାସ ପ୍ରମୁଖ ବୈଷ୍ଣବମାନଙ୍କ ମତ ଦ୍ୱାରା କେତେ ବେଶୀ ପ୍ରଭାବିତ ଥିଲେ, ତାହା ଏହି ଘଟଣାରୁ ଜଣା ଯାଉଅଛି ।

୧୩୦-୧୬୪ ପଞ୍ଚସଖା ଅନ୍ତର୍ଗତ ବଳରାମ ଦାସ ଥିଲେ 'ଯୋଗପୁରୁଷ' । ରାମାୟଣ ରଚନା କରି ସେ କେବଳ ଦୁର୍ଲଭ କବିତ୍ୱ ପ୍ରକାଶ କରି ନ ଥିଲେ ବରଂ

ରଚିଲେ ରାମାୟଣ ଗୀତ . || ଯୋଗପୁରୁଷ ବୋଲାଇ ତ । ୧୩୩ ।
ରଥ ଉପରକୁ ଉଠିଲ || ହାତରେ ଅଛୁ ଫୁଲମାଳା । ୧୩୪ ।
ରଥରେ ବାମନକୁ ଦେବ || ଭଗତଭାବ ଅରପିବ । ୧୩୫ ।
ବୋଲି ରଥକୁ ଚଢ଼ିଗଲ || ସେବକେ ବୋଲେ ଏଥୁ ପଲା । ୧୩୬ ।
ତୋହର ନାହିଁ ଅଧିକାର || ମାଳା ଅରପିବୁ ରଥର । ୧୩୭ ।
ସେବକେ କେତେ ଧିକାରିଲେ || ଏ ଥାନୁ ପଲା ରେ ବୋଲିଲେ । ୧୩୮ ।
ରଥରୁ ତଳକୁ ଆସିଲ || କାହାକୁ କିଛୁ ନ ବୋଇଲ । ୧୩୯ ।
ଗଲ ସେ ସମୁଦ୍ର ତଟକୁ || ଜଗନ୍ନାଥଙ୍କୁ ପୂଜିବାକୁ । ୧୪୦ ।
ବାଲିରେ ରଥ ଏକ କଲ || ଉତ୍କଳ ଆମ ନନ୍ଦବଳା । ୧୪୧ ।
ଆସ ହେ ବଳରାମ ଭାଇ || ସୁଭଦ୍ରା ଭଉଣୀକୁ ନେଇ । ୧୪୨ ।
ତିନି ପ୍ରତିମା ବିଜେ ହେଲେ || ବାଲି ରଥେ ପୂଜା ପାଇଲେ । ୧୪୩ ।
ଦାଣ୍ଡରେ ରଥ ନ ଚଳିଲ || ଚିନ୍ତ ହେଲେକ ଲୋକମେଳା । ୧୪୪ ।
ଭଗତେ ଅନାଇ ରହିଲେ || ସେବକେ କେତେ ଯତ୍ନ କଲେ । ୧୪୫ ।
ନୃପ ଆସିଣ ଉଗ୍ର ହୋଇ || ତଥାପି ରଥ ନ ଚଳଇ । ୧୪୬ ।
ଦିବସ ଯାଇ ରାତି ହେଲ || ତଥାଚ ରଥ ନ ଚଳିଲ । ୧୪୭ ।
ନିଷେଧ ଭକ୍ତ ରୁଣ୍ଡ ହେଲେ || କେହି ବୁଝାଇ ନ ପାରିଲେ । ୧୪୮ ।
ନୃପଙ୍କୁ ରାତ୍ରେ ସ୍ୱପ୍ନ ହେଲ || ସମୁଦ୍ର ତଟେ ମୁଁ ବୋଇଲ । ୧୪୯ ।
ଯାଅ ରେ ରାଜା ଆଣ ମୋତେ || ଭକ୍ତ ବଳରାମ ସହିତେ । ୧୫୦ ।

---

ଆପଣଙ୍କର ଭକ୍ତିନିଷ୍ଠା, ନୀତିଜ୍ଞାନ, ଗମ୍ଭୀର ବ୍ୟକ୍ତିତ୍ୱ ଓ ଅପୂର୍ବ ଭକ୍ତିଭାବ ବଳରେ ସେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । ଥରେ ରଥଯାତ୍ରା ବେଳେ ସେ ରଥ ଉପରେ ଠାକୁରଙ୍କୁ ଫୁଲମାଳା ଅର୍ପଣ କରିବାକୁ ଗଲେ । ମାତ୍ର ସେବକେ ତାଙ୍କୁ ରଥ ଉପରୁ ଓହ୍ଲାଇ ଦେଲେ । ବାଧ୍ୟ, ଅପମାନରେ ଦୁଃଖିତ ହୋଇ ସେ ସମୁଦ୍ର କୂଳକୁ ଯାଇ ବାଲିରେ ରଥ ତିଆରି କରି ଜଗନ୍ନାଥଙ୍କୁ ତାଙ୍କ ହାତ ତିଆରି ବାଲି ରଥରେ ବିଜେ କରି ପୂଜା ଅର୍ଚ୍ଚନା ଗ୍ରହଣ କରିବାକୁ ବ୍ୟାକୁଳ ନିବେଦନ କଲେ । ଜଗନ୍ନାଥେ, ଭାଇ ଓ ଭଉଣୀଙ୍କୁ ନେଇ ବାଲି ରଥରେ ବିଜେ ହେଲେ । ଦାଣ୍ଡରେ ରଥ ପଡ଼ି ରହିଲା । ଶତଚେଷ୍ଟା ସତ୍ତ୍ୱେ ରଥ ଚଳିଲା ନାହିଁ । ସମସ୍ତଙ୍କ ମନରେ ବିରସ ଭାବ । ରାତିରେ ରାଜାଙ୍କୁ ସ୍ୱପ୍ନ ହେଲା ଓ ରାଜା ସମୁଦ୍ର କୂଳକୁ ଆଡ଼ମ୍ବରରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ଯାଇ ବଳରାମଙ୍କୁ କ୍ଷମା ଭିକ୍ଷା କଲେ । ବଡ଼ଦାଣ୍ଡକୁ ବଳରାମ ଦାସ ଆସି ରଥ ଉପରେ ଠାକୁରଙ୍କୁ ଫୁଲମାଳା ଦେଇ ଚନ୍ଦନ ଲେପନ କରିବାରୁ ରଥ ଘିଡ଼ି ଘିଡ଼ି ହୋଇ ଗଡ଼ି ଚାଲିଲା ।

[ ଏକସ୍ତ୍ରଳଣ ]

ରଜା ସେ ରଥକୁ ଦ୍ଭାର || ପ୍ରଭୁ ସ୍ୱାମୀଙ୍କଇ ସମ୍ଭାଷ । ୧୫୧ ।
କାଶୀ ମିଶ୍ର ତପନ ଆଗ୍ରହେ || କହ୍ଲାଭ ଅନନ୍ତ ଅଗ୍ରହେ । ୧୫୨ ।
ଅଚ୍ୟୁତ ଅନନ୍ତ ଯଶୋବନ୍ତ || ତୁଳସୀ ମିଶ୍ର ଦାମୋଦର ପଣ୍ଡିତ । ୧୫୩ ।
ଝାଞ୍ଜ ମୃଦଙ୍ଗ କଲରୋଳେ || ସମୁଦ୍ର ତଟ ଯେ ଉଛୁଳେ । ୧୫୪ ।
ନାଳରେ ସର୍ବେ ମିଳିଲେ || ଦଣ୍ଡ ପ୍ରଣାମେ ଜଣାଇଲେ । ୧୫୫ ।
ସ୍ତୁବେ ସ୍ତବ ଚନୋଦଆ || ଭକ୍ତରଙ୍ଗଂ ଅନୁସନ୍ଧ । ୧୫୬ ।
ବଳରାମଙ୍କୁ ଧନ୍ୟ କଲେ || ଫୁଲ ଚନ୍ଦନେ ଅରଚିଲେ । ୧୫୭ ।
ବୋଇଲେ ଆସ ବଳରାମ || ଭକତ ଶ୍ରେଷ୍ଠ ତୋର ନାମ । ୧୫୮ ।
ଭଗତି ସ୍ୱବେଶ ବାନ୍ଧିଲୁ || ପ୍ରଭୁଙ୍କୁ ରୁଢ ବଶ କଲୁ । ୧୫୯ ।
ତୋ ତୁହୁଁ କାହିଁ ଭକ୍ତ ଅଛୁ || ଆସ ରୂ ବେଗେଣ ମୁରୁଛୁ । ୧୬୦ ।
ଆସିଲ ବଳରାମ ଦାସ || ରଥ ଉପରେ ପରକାଶ । ୧୬୧ ।
ପ୍ରଭୁଙ୍କୁ ମାଳା ସେ ଅର୍ପିଲ || ଚନ୍ଦନେ ତନୁ ଜଡ଼ାଇଲ । ୧୬୨ ।
ଘଣ୍ଟ ମୃଦଙ୍ଗ କଲରୋଳ || ବଡ଼ଦାଣ୍ଡ ତହୁଁ ଉଚ୍ଛୁଳେ । ୧୬୩ ।
ରଥ ଚଳଇ ଘିଡ଼ି ଘିଡ଼ି || ମାଧବ ଭଣେ ପାଦେ ପଡ଼ି । ୧୬୪ ।



# ଷଷ୍ଠ ଅଧ୍ୟାୟ

ଶୁଣ ସାଧବେ ଏହୁ ରସ ॥ ମହାମନ୍ତ୍ରର ଯେ ରହସ୍ୟ । ୧ ।
ହରେ ରାମ ବା ହରେକୃଷ୍ଣ ॥ ଏ ଯେନ କନ୍ଦଳ ଉଆଣ । ୨ ।
ଶିବାନନ୍ଦ ବୋଲେ ହରେକୃଷ୍ଣ ॥ କହ୍ନାଇ ବୋଲେ ହରେରାମ । ୩ ।
ମନ୍ତ୍ରର ଆଗ କସ ହୋଇ ॥ ଏ ଯେନ ତର୍କ ଉପୁଜଇ । ୪ ।
ବହୁତ କଳହ ସେ କଲେ ॥ ସ୍ୱରୂପ ପାଶେ ଯାଇ ହେଲେ । ୫ ।
ସ୍ୱରୂପ ବୋଲେ ଚାଲ ଯିବା ॥ ସ୍ୱାମୀ ପାରୁଶରୁ ବୁଝିବା । ୬ ।
ସ୍ୱାମୀ ବୋଇଲେ ଭଲ ହେଲ ॥ ପ୍ରଭୁଙ୍କୁ ହକାର ବୋଇଲ । ୭ ।
ପ୍ରଭୁ ହକାରେ ରାମରାୟ ॥ ସାର୍ବଭୌମ କାଶୀ ମିଶ୍ରଏ । ୮ ।
ଉଠ ପାରୁଶ ମଣ୍ଡପେଣ ॥ ମେଳ ହୋଇଲେ ସର୍ବଜନ । ୯ ।
ଅନନ୍ତ ଅଚ୍ୟୁତ କହ୍ନାଇ ॥ ଶିବାନନ୍ଦ ଯେ ଗୋବନ୍ଦାଇ । ୧୦ ।
ପ୍ରଭୁଙ୍କୁ ସଭା ମୁଖ୍ୟ କଲେ ॥ ଉତ୍ତର କରନ୍ତୋ ବୋଇଲେ । ୧୧ ।
ସାର୍ବଭୌମ ଯେ ହରେରାମ ॥ ଗଦାଧର ଯେ ହରେକୃଷ୍ଣ । ୧୨ ।
କାଶୀ ମିଶ୍ର ବୋଲେ କ୍ଷେତ୍ରରେ ॥ ହରେରାମ ମନ୍ତ୍ର ପ୍ରଚଳେ । ୧୩ ।
ବହୁତ ମୁଦ୍ର ତର୍କ ହେଲ ॥ ଶେଷେ ପ୍ରଭୁ ଯେ ଶୁଣାଇଲ । ୧୪ ।
ହରେରାମ ମନ୍ତ୍ରଟି ସାର ॥ ନୀଳାଚଳେ ଏହୁ ପ୍ରଚାର । ୧୫ ।
ଏଥକୁ ଆନ କ କରିବା ॥ ଆଦ୍ୟ ହରେକୃଷ୍ଣ ଗ୍ରହିବା । ୧୬ ।
ଶିବାନନ୍ଦ ବୋଲେ ଗୌଡ଼ରେ ॥ ହରେକୃଷ୍ଣ ଆଦ୍ୟ ପ୍ରଚରେ । ୧୭ ।

---

୧-୧୮ ମହାମନ୍ତ୍ର ସମ୍ପର୍କୀୟ ବିବାଦ ଓ ତାହାର ସମାଧାନ ଏଠାରେ ବର୍ଣ୍ଣିତ । ମହାମନ୍ତ୍ରର ଆଦ୍ୟ 'ହରେରାମ' ହେବ କି 'ହରେକୃଷ୍ଣ' ହେବ—ଏ ବିଷୟ ନେଇ ଶ୍ରୀକ୍ଷେତ୍ରରେ ଉତ୍କଳୀୟ ଓ ଗୌଡ଼ୀୟ ଭକ୍ତମାନଙ୍କ ମଧ୍ୟରେ ଯୁକ୍ତିତର୍କ, ବାଦବିବାଦ ଉପସ୍ଥିତ ହେଲା । ଶିବାନନ୍ଦ ସେନ ଆଦ୍ୟ 'ହରେକୃଷ୍ଣ'କୁ ସମର୍ଥନ କରୁଥିଲା ବେଳେ କହ୍ନାଇ ଖୁଣ୍ଟିଆ ପ୍ରମୁଖ ଆଉ ଗୋଟିଏ ଗୋଷ୍ଠୀ ଆଦ୍ୟ 'ହରେରାମ'ର ଯଥାର୍ଥତା ସ୍ୱୀକାର କରୁଥିଲେ । ଉଭୟ ଗୋଷ୍ଠୀ ଏହାର ସମାଧାନ ପାଇଁ ସ୍ୱରୂପ ଦାମୋଦରଙ୍କ ନିକଟରେ ପହଞ୍ଚିଲେ । ସ୍ୱରୂପ ଏମାନଙ୍କୁ ନେଇ ସ୍ୱାମୀ ଜଗନ୍ନାଥ ଦାସଙ୍କ ନିକଟକୁ ଗଲେ । ଜଗନ୍ନାଥ ଦାସ ଏଥିପାଇଁ ଶ୍ରୀଚୈତନ୍ୟଙ୍କର ସହାୟତା ନେଇଲେ । ଶ୍ରୀଚୈତନ୍ୟ ଏହାର ସମାଧାନ ପାଇଁ ରାୟ ରାମାନନ୍ଦ, ବାସୁଦେବ ସାର୍ବଭୌମ ଓ କାଶୀଶ୍ୱର ମିଶ୍ରଙ୍କୁ ଡକାଇଲେ । ସମସ୍ତେ ଉତ୍ତର ପାର୍ଶ୍ୱ ମଣ୍ଡପରେ ସମବେତ ହୋଇ ଏ ବିଷୟରେ

ପ୍ରଭୁ ବୋଇଲେ କହୁ ଭଲ || ଗଉଡ଼େ ହରେକୃଷ୍ଣ ହେଲ |୧୮|
ଏଥୁ ଅନ୍ତରେ ଶୁଣ ବାର୍ତ୍ତା || ଶିବାନନ୍ଦ ସଙ୍ଗି ଅନେକ୍ତା |୧୯|
ରଥକୁ ଦର୍ଶନା ଆଣିବା || ମାସାବଧି କ୍ଷେତ୍ରେ ରହିବା |୨୦|
ଦର୍ଶନିଆ ସେ ଆଣିଲର || କଉଡ଼ି କରଇ ବେଭାର |୨୧|
କହ୍ନାଇ ଏହା ନ ସହିଲ || ବୋଲେ ଦର୍ଶନା ଯେଣପଲା |୨୨|
କହ୍ନାଇ ଆଣିଲ ଶଢେଇ || ଦର୍ଶନୀଙ୍କୁ ତାସ ଦେଲକ |୨୩|
ଲଗିଲ କନ୍ଦୋଳ ହେତୁ || କାଶୀ ମିଶ୍ର ହୋଏ ମଧ୍ୟସ୍ଥ |୨୪|
କାଶୀ ମିଶ୍ର ଯେ ସମ୍ଭାଳଲେ || ଗୋଳ ନ କର ଏତେ ଭଲେ |୨୫|
ଭଉଣୀ ଶିଖି ମହାନ୍ତିର || ମାଧବୀ ଦାସୀ ନାମ ତାର |୨୬|

---

ତତ୍ତ୍ୱର ଆଲୋଚନା କଲେ। ଏହି ସୁବ୍ୟାଖ୍ୟାତ ତର୍କ ସଭାର ସଭାପତି ରୂପେ ଶ୍ରୀଚୈତନ୍ୟଙ୍କୁ ବରଣ କରାଗଲା। ବହୁ ଆଲୋଚନା, ଯୁକ୍ତିତର୍କ, ତତ୍ତ୍ୱର ବିମର୍ଷ ପରେ ଚୈତନ୍ୟ ତାଙ୍କର ନିଷ୍ପତ୍ତି ଜଣାଇଲେ—'ହରେରାମ' ମନ୍ତ୍ର ହିଁ ସାର। ନୀଳାଚଳରେ ଏହା ପୂର୍ବରୁ ଚାଲି ଆସୁଛି। ତଥାପି ଶିବାନନ୍ଦ ସେନ କହିଲେ— ଗୌଡ଼ରେ କିନ୍ତୁ 'ହରେକୃଷ୍ଣ' ନାମ ବହୁ କାଳରୁ ଚାଲୁଛି। ଚୈତନ୍ୟ କହିଲେ—ବଙ୍ଗରେ 'ହରେକୃଷ୍ଣ' ମନ୍ତ୍ର ଚାଲିବାରେ ଆପତ୍ତି କରିବାର କିଛି ନାହିଁ। ତାପରେ ଓଡ଼ିଶାରେ 'ହରେରାମ' ଓ ବଙ୍ଗରେ 'ହରେକୃଷ୍ଣ' ମହାମନ୍ତ୍ର ନିର୍ଦ୍ଦିଷ୍ଟ ଭାବରେ ପ୍ରଚଳିତ ହେଲା ଏବଂ ଏ ଦୋହିଙ୍କୁ ସମସ୍ତେ ସ୍ୱୀକାର କଲେ।

୧୯-୪୧ ଶିବାନନ୍ଦ ସେନ ପ୍ରତିବର୍ଷ ରଥଯାତ୍ରା ବେଳକୁ ଗୌଡ଼ରୁ ଯାତ୍ରୀମାନଙ୍କୁ ପୁଷ୍ଟ ଆଣୁଥିଲେ। କହ୍ନାଇ ଖୁଣ୍ଟିଆ ମଧ୍ୟ ଉତ୍କଳରୁ ଯାତ୍ରୀମାନଙ୍କୁ ନେବା ଆଣିବା କାରବାର କରୁଥିଲେ। ଏହାଦ୍ୱାରା ଏମାନେ ଅର୍ଥ ଉପାର୍ଜନ କରୁଥିଲେ। ଥରେ ଶିବାନନ୍ଦ ସେନଙ୍କ ଯଜମାନ ଓ କହ୍ନାଇ ଖୁଣ୍ଟିଆଙ୍କ ଯଜମାନଙ୍କୁ ପୁଷ୍ଟରେ ରଖାଇବା ନେଇ ଉଭୟଙ୍କ ମଧ୍ୟରେ କଳହ ଲାଗିଲା। ମାତ୍ର କାଶୀ ମିଶ୍ରଙ୍କ ମଧ୍ୟସ୍ଥତାରେ ଏ କଳହ ଦୂର ହେଲା। ଶିବାନନ୍ଦଙ୍କ ଯଜମାନମାନେ ଓ କହ୍ନାଇ ଆଣିଥିବା ଯାତ୍ରୀମାନେ ପୂର୍ବରେ ଇଟସାଳାରେ ବସା ପାଇଲେ। ରଥଯାତ୍ରାକୁ ଆସୁଥିବା ଯାତ୍ରୀ ଏଠାରେ ଚତୁର୍ମାସ୍ୟା କଟାଉଥିଲେ।

୨୬ ୪୧ ଶିଖି ମହାନ୍ତିଙ୍କ ଭଉଣୀ ମାଧବୀ ଦାସୀ। ସେ ବୋଧହୁଏ ବାଲ୍ୟବିଧବା ଥିଲେ। ଭକ୍ତି ଭାବ ଓ ଭକ୍ତି ସଂଗୀତ ରଚନାରେ ତାଙ୍କର ମନ ବୁଡ଼ିଥିଲା। ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟଙ୍କ ଗହଣରେ ମଧୁର ସ୍ୱରରେ ଭକ୍ତି ସଂଗୀତ

ବଡାଇ ତାହାର ଭଗତ ॥ ସଂକୀର୍ତ୍ତନକୁ ତାର ମତ ।୨୭।
ନାମରେ ହୋଏ ମେହ୍ନ ଖେଳା ॥ ଜପଇ ନାମ ଅନର୍ଗଳା ।୨୮।
ରହିଲ ବହୁତ ସେ ଗୀତ ॥ କୃଷ୍ଣ ରସରେ ଅପ୍ରମିତ ।୨୯।
ସ୍ୱାମୀ ପ୍ରଭୁର ସନ୍ନିଧିରେ ॥ ଗାଅଇ ଗୀତ ସ୍ୱରଭେଦେ ।୩୦।
ପ୍ରଭୁ ଯେ ତାଙ୍କୁ କୃପା କଲ ॥ ଗୋଷ୍ଠୀରେ ବସ ତୁ ବୋଇଲ ।୩୧।
ଇଷ୍ଟ ଗୋଷ୍ଠୀରୁ ଭକ୍ତ ଗଲେ ॥ ଆଉ ନ ଆସିବୁ ବୋଇଲେ ।୩୨।
ନାରୀଏ ଅଟୁ ତାର ପାଶ ॥ ହେଉ ସେ ଭଗତ ବିଶେଷ ।୩୩।
ଆସନ୍ତୁ ନ ଥିବା ଏଠାଇଁ ॥ ପ୍ରଭୁର ପାଖରେ ଜଣାଇ ।୩୪।
ସ୍ୱାମୀ ବୋଇଲ ମନ ସତ ॥ ମାଧବୀ ଦାସୀ ହମତ୍ରୂଳ ।୩୫।
ଭଗତ କାହିଁଛୁ କି ଆଉ ॥ ତୁମେ ବା ବୋଲ ସେ ପଳାଉ ।୩୬।
ବୈଷ୍ଣବ ସବେ ଖେଳ ହୋଇ ॥ ନାରୀ ସନ୍ନିଧେ ସବୁ ଯାଇ ।୩୭।
କାଷ୍ଠ ପାଷାଣ ନାରୀ ମୂର୍ତ୍ତି ॥ ବୈଷ୍ଣବେ ଅଦୃଶ ଅଟନ୍ତି ।୩୮।
ରକତ ମାଉଁସର ଅଙ୍ଗ ॥ ମାଧବୀ ସତ ପରସଙ୍ଗ ।୩୯।
ଏ କଥା ସତ ପରମାଣ ॥ ତା ଆଗମନକୁ ବାରଣ ।୪୦।
ମାଧବୀ ଆଉ ନ ଅଇଲ ॥ ଇଷ୍ଟ ଗୋଷ୍ଠୀ ସଙ୍ଗ ଛାଡିଲ ।୪୧।
ପ୍ରଭୁ ସଙ୍ଗତ ଗୌଡ଼ିଆଏ ॥ ସକଳ ଚଇତନ୍ୟ ନୋହେ ।୪୨।

---

ଗାନ କରି ସେ ପ୍ରସିଦ୍ଧି ଅର୍ଜନ କରିଥିଲେ ଏବଂ ଚୈତନ୍ୟଙ୍କ ସୁପାରିଶ କ୍ରମେ ସେ ଇଷ୍ଟ ଗୋଷ୍ଠୀରେ ବସୁଥିଲେ । ମାତ୍ର ଚୈତନ୍ୟଙ୍କ ଅନୁଗାମୀ କେତେକ ଗୌଡ଼ୀୟ ଭକ୍ତ ଏହାକୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ଜଣେ ନାରୀ ଚୈତନ୍ୟଙ୍କ ଗହଣରେ ସ୍ଥାନ ପାଇ ଥିବାରୁ ଅନ୍ୟ ଭକ୍ତମାନେ ଚୈତନ୍ୟଙ୍କ ଇଷ୍ଟ ଗୋଷ୍ଠୀକୁ ଯିବାକୁ ଚାହିଁଲେ ନାହିଁ । ଜଗନ୍ନାଥ ଦାସ, ମାଧବୀ ଦାସୀଙ୍କ ଭକ୍ତିଭାବ ବୁଝିଥିଲେ; ସେଥି ଯେ ମାଧବୀଙ୍କ ଆଗମନକୁ ସମର୍ଥନ କଲେ ସତ, ମାତ୍ର ନାରୀ ନିକଟରେ ପୁରୁଷର ସ୍ଖଳନ ଓ ବାତୁଳତା ପ୍ରକାଶ ପାଇବା ଓ ଧୈର୍ଯ୍ୟଚ୍ୟୁତ ଘଟିବା ସ୍ୱାଭାବିକ ବୋଲି କହିଲେ । ବୈଷ୍ଣବ ସହଜେ ଆବେଗ ପ୍ରବଣ; ସେଥିରେ ପୁଣି ନାରୀର ଉପସ୍ଥିତି ତାହାକୁ ଧ୍ୱଂସ ଆଡ଼କୁ ଟାଣି ନେଇଥାଏ । କାଷ୍ଠ ପାଷାଣର ନାରୀ ମୂର୍ତ୍ତି ମଧ୍ୟ ବୈଷ୍ଣବ ପକ୍ଷରେ ଦର୍ଶନୀୟ ନୁହେଁ । ଯାହା ହେଲେ ମଧ୍ୟ ମାଧବୀ ଦାସୀ ରକ୍ତ ମାଂସର ଶରୀରଧାରିଣୀ ନାରୀ । ତେଣୁ ତାଙ୍କର ସ୍ଖଳନ ଅସମ୍ଭବ ନୁହେଁ । ଏହି ଘଟଣାରେ ମାଧବୀ ଆଉ ଇଷ୍ଟ-ଗୋଷ୍ଠୀକୁ ଆସିଲେ ନାହିଁ ।

୪୨-୬୫ ଶ୍ରୀଚୈତନ୍ୟଙ୍କ ସହିତ ପୁରୀକୁ ଆସିଥିବା ଓ ପୁରୀରେ ଅବସ୍ଥାନ କରୁଥିବା ଗୌଡ଼ୀୟ ଭକ୍ତମାନେ ସମସ୍ତେ ଚୈତନ୍ୟଙ୍କ ପରି ମହାପୁରୁଷ ନ ଥିଲେ ।

ଦେଖନ୍ତି ମୃଗର ନାଭିରେ || କସ୍ତୁରୀ ନ ଥାଏଟି ଭଲେ |୪୩|
ସକଳ ଅରଣ୍ୟେ ଚନ୍ଦନ || ନ ଥାଇ ଜାଣ କଦାଚନ |୪୪|
ଦେଖ ଗୌଡ଼ିସ୍ଥା ବୈଷ୍ଣବ || ନୋହନ୍ତି ଉତ୍କଳ ସ୍ୱରୂପ |୪୫|
ସାନ ହରିଦାସ ଯେ ନାମେ || ଥିଲେ ସେ ସଙ୍ଗୀ ପୁରୀ ଧାମେ |୪୬|
ମାଧବୀ ସଙ୍ଗେ ତାର ଭାବ || ବଢ଼ିଲା ଦିନୁ ଦିନ ସବ |୪୭|
ଯାଏ ସେ ମାଧବୀ ସମୀପେ || ବୃଥା ଛଳନା କରି କେତେ |୪୮|
ତଣ୍ଡୁଳ ଲବଣର ଅର୍ଥେ || ତା ପାଖେ ମିଳଇ ବୃଣତେ |୪୯|
ଶିଖି ମହାନ୍ତି ଜାଣିଲେ || ତଥାପି ସିବା ନ ଛାଡ଼ିଲେ |୫୦|
ସନ୍ଦେହ କଲେ ସାଇଁଷ୍ଠଇ || ବୋଇଲେ ଏହା ନ ଶୋଭାଇ |୫୧|
ଗ୍ରୀଷ୍ମ କାଳରେ ଦିନେ ଦେଖି || ସାନ ହରିଦାସକୁ ନିରେଖି |୫୨|
ଶିଖି ମହାନ୍ତି ହାତୁ ମାଡ଼ || ଖାଇଲା ହରିଦାସ ମୂଢ଼ |୫୩|
ଗୌଡ଼ିସ୍ଥାମାନ ମେଳ ହେଲେ || ପ୍ରଭୁଙ୍କୁ ଯାଇ ଜଣାଇଲେ |୫୪|
ପ୍ରଭୁ ବୋଇଲେ ଅଚ୍ଛା କଲ || ବର୍ଜେ କି ହରିଦାସ ଭଲ |୫୫|
ମୂର୍ଖ ତା ବୁଦ୍ଧି ନ ଶୋଭାଇ || ଭର୍ତ୍ସନା କଲେ ଅନେକାଇ |୫୬|

---

ତାଙ୍କ ଭିତରୁ ଜଣେ ଥିଲେ ସାନ ହରିଦାସ । ମାଧବୀ ଦାସୀଙ୍କ ପ୍ରତି ସେ କାମୁକତା ପ୍ରକାଶ କରୁଥିଲେ । ବୃଥାରେ ଛଳନା କରି ସେ ବାରମ୍ବାର ମାଧବୀଙ୍କ ଘରକୁ ଯାଉଥିଲେ । ତଣ୍ଡୁଳ-ଲବଣ ଆଣିବା ପାଇଁ ସେ ମାଧବୀଙ୍କ ନିକଟକୁ ଯାଉଥିଲେ । ଏଥିରେ ସାନ୍ଧି ପଡ଼ିଶା ଲୋକେ ସନ୍ଦେହ କରିବା ସ୍ୱାଭାବିକ । ମାଧବୀଙ୍କ ସ୍ୱାମୀ ସାନ ହରିଦାସକୁ ଆସିବାକୁ ବାରଣ କଲେ; ତଥାପି କିଛି ଫଳ ହେଲନାହିଁ । ପରେ ଗ୍ରୀଷ୍ମ କାଳରେ ତାଙ୍କ ଘରେ ସାନ ହରିଦାସକୁ ଦେଖି ଶିଖି ମହାନ୍ତି ମାଡ଼ ଦେଲେ । ମାଡ଼ଖାଇ ହରିଦାସ ଗୌଡ଼ୀୟ ସଙ୍ଗୀ ସହଚରମାନଙ୍କୁ କହିଲେ । ଗୌଡ଼ୀୟମାନେ ମେଳ ହୋଇ ଚୈତନ୍ୟଙ୍କୁ ଜଣାଇଲେ । ମାତ୍ର ଚୈତନ୍ୟ ଘଟଣା ସମ୍ପର୍କରେ ଅବହିତ ହୋଇ ସାନ ହରିଦାସର ମୂର୍ଖ ବୁଦ୍ଧିର ନାହିଁ ବୋଲି କହିଲେ । ନିନ୍ଦା ଓ ଅପମାନ ପାଇ ହରିଦାସ ପୁରୀରୁ ଯାଇ ନିଜ କୃତ ପାପର ପ୍ରାୟଶ୍ଚିତ୍ତ ପାଇଁ ଗଙ୍ଗାରେ ଝାସ ଦେଲେ । ଏକଥା ପୁରୀରେ ଜଣାଗଲା ପରେ ଗୌଡ଼ୀୟମାନେ ପୁରୀରେ ଚୈତନ୍ୟଙ୍କର ସଙ୍ଗ ତ୍ୟାଗ କରି ସ୍ୱଦେଶକୁ ଫେରିବାକୁ ସ୍ଥିର କଲେ । ଏହି ଘଟଣାରେ ଚୈତନ୍ୟ ଗୌଡ଼ୀୟ ଭକ୍ତମାନଙ୍କ ଆଚରଣକୁ ସମର୍ଥନ କଲେ ନାହିଁ । ତାହା ହିଁ ଗୌଡ଼ୀୟ ସହଚରଙ୍କ ଈର୍ଷାର କାରଣ । ପୁଣି ଓଡ଼ିଆ ଭକ୍ତ, ବିଶେଷତଃ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ନିବିଡ଼ ସଖ୍ୟ ମଧ୍ୟ କେତେକ ଗୌଡ଼ୀୟ ଭକ୍ତଙ୍କର ଈର୍ଷାର କାରଣ ଥିଲା ।

ହୃଦାପକୁ ବଡ଼ ବାଧା || ସାଥି ପ୍ରଭୁଙ୍କୁ ଚାଲିଲ ସିଧା | ୫୭ |
ନୀଳାଚଳେ ସେ ନ ରହିଲ || ଗଙ୍ଗାରେ ଯାଇ ଝାସ ଦେଲ | ୫୮ |
ସମ୍ବାଦ ପାଇଣ ଗୌଡ଼ିଆ || ମେଳ ହୋଇଣ ବସୁରିଆ | ୫୯ |
ଯିବା କି ରହିବା ଏ ଥାନେ || ପ୍ରଭୁର ମନ ହୋଏ ଯେନ୍ନେ | ୬୦ |
ପ୍ରଭୁ ପଠି ଜଗା ତାପକୁ || ଅଠ ବଡ଼ାଇ ବୋଲିବାକୁ | ୬୧ |
ଆସନ୍ତି ସେ ଉତ୍ତର କଲ || ଆମ୍ଭେ ଚଳିଲେ ନାକ ଭଲ | ୬୨ |
ଅଣଉପଦେଶିଆ ଜଗାଦାସ || ତାହାଙ୍କୁ ସ୍ୱାମୀ ନାମେ ଘୋଷ | ୬୩ |
ଆମ୍ଭଙ୍କୁ ଉପେକ୍ଷା ସେ କଲ || ଏଠାରୁ ଗୃହ ସଙ୍ଗେ ଯିବା | ୬୪ |
ସାଥି ପ୍ରଭୁରୁ ସଙ୍ଗେ ଗଲେ || ପଥକୁ ଲେଉଟି ନଇଲେ | ୬୫ |
ସ୍ୱାମୀ ସ୍ୱରୂପ ଦାମୋଦର || ଶିବାନନ୍ଦ ସେ ଗଦାଧର | ୬୬ |
ଏମାନ ପ୍ରଭୁର ସନ୍ନିଧେ || ବସି ବସୁରିଲେ ଉଦ୍ରାଧେ | ୬୭ |
ଶିବାନନ୍ଦ ବୋଲେ ହକାର || ତୋହର ଏ ନୋହେ ବେଭାର | ୬୮ |

---

୬୭-୯୩ ଶିବାନନ୍ଦ ସେନଙ୍କ ନେତୃତ୍ୱରେ ଦଳେ ଗୌଡ଼ୀୟ ଭକ୍ତ ଚୈତନ୍ୟଙ୍କ ନିକଟରେ ଉପସ୍ଥିତ ହୋଇ ପଳାଇ ଯାଇଥିବା ବୈଷ୍ଣବଙ୍କୁ ଫେରାଇ ଆଣିବାକୁ କହିଲେ । ଜଗନ୍ନାଥ ଦାସଙ୍କୁ ହାତରେ ନେଇ ଯିବାର ଇଚ୍ଛା ଚୈତନ୍ୟଙ୍କର ଥିଲା; ମାତ୍ର ତାସେ ମନାକଲେ । ତେଣୁ ଚିଠି ଲେଖି ପଠାଇବାର ବ୍ୟବସ୍ଥା ହେଲା । ଚୈତନ୍ୟ, ଜଗନ୍ନାଥଙ୍କୁ କହିଲେ—ତୁମେ ଚିଠାଉଟିଏ ଲେଖିଦିଅ । ଜଗନ୍ନାଥ, ଚୈତନ୍ୟଙ୍କର ଭାବାବଳୀ ଅନୁସରଣରେ ଚିଠାଉ ଲେଖିଲେ । ଏ ଚିଠାଉ ଆଠଟି ଶ୍ଳୋକ ମାତ୍ର । ଏହାର ରଚୟିତା ଜଗନ୍ନାଥ ଦାସ । ଶିବାନନ୍ଦ ଚିଠାଉ ନେଇ ଯାଜପୁର ପର୍ଯ୍ୟନ୍ତ ଗଲେ, ଚିଠାଉ ଦେଲେ, ଚୈତନ୍ୟ ତୁମେ ସବୁ ଫେରି ଆସିବାକୁ ଏ ଚିଠାଉ ଲେଖିଛନ୍ତି ବୋଲି କହିଲେ । କେହି ତ ଫେରିଲେ ନାହିଁ; ବରଂ ଚୈତନ୍ୟଙ୍କର ଚିଠାଉ ନେଇ ଗୌଡ଼କୁ ଚାଲିଗଲେ । ଏ ଚିଠାଉର ଆଠଟି ଶ୍ଳୋକକୁ ଚୈତନ୍ୟଙ୍କ ରଚିତ ଶିକ୍ଷାଷ୍ଟକ ବୋଲି ଗୌଡ଼ରେ ପ୍ରଚାର ହେଲା । ମାତ୍ର ଏହାର ରଚୟିତା ଜଗନ୍ନାଥ ଦାସ ବୋଲି ଏଥିରୁ ଜଣାଯାଉଛି । ମାଧବ ପଟ୍ଟନାୟକ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଇଛନ୍ତି । ଏହି ଆଠଟି ଶ୍ଳୋକର ଭାବ ସମାନ ନୁହେଁ—ତେଣୁ ଏକ ନିର୍ଦ୍ଦିଷ୍ଟ ସମୟରେ ଏଗୁଡ଼ିକ ଏକାଥର ଜଣେ ରଚିତ ନୁହେ ବୋଲି କେହି କେହି ମତବ୍ୟକ୍ତ କରିଥାନ୍ତି । ମାତ୍ର ଚୈତନ୍ୟଙ୍କ ଭାବାବଳୀ ଅନୁସରଣ କରି ଜଗନ୍ନାଥ ଦାସ ଲେଖିଥିବା ମାଧବ ପଟ୍ଟନାୟକ କହନ୍ତି । ବସ୍ତୁତଃ ଚୈତନ୍ୟଙ୍କ ଦିବ୍ୟୋନ୍ମାଦମୟ ଭାବଧାରା ଏହି ଶ୍ଳୋକାବଳୀର ଭିତ୍ତି—ଏ ବିଷୟରେ ଆଉ

ତୋର ନମିଷ୍ଠ ଏଠେ ଥିଲେ || ଏବେ ସେ ସବେ ଚଳିଗଲେ ।୬୯।
ଏ କଥା ନୋହେ ତୋତେ ଭଲ || ଲେଉଛି ଅନାଥ ଛେଳିର ।୭୦।
ପ୍ରଭୁ ଚିହ୍ନିଲେ ସ୍ୱାମୀ ମୁଖ || ସ୍ୱାମୀ ସେ ହୋଇଲେ ସମ୍ମୁଖ ।୭୧।
ବୋଇଲେ ପ୍ରଭୁ ତୁ ନ ଚିହ୍ନୁ || ମୋ ପଛୁଁ ମଠ ଗଲେ ସିନା ।୭୨।
ମୁଁ ନ ଯାଇ ତୋର କୂଳେ || ଡାକିଲେ ଆସିବେ କି କଲେ ।୭୩।
ପ୍ରଭୁ ବୋଇଲେ ଲେଖ ଚିଟି || ଫେରିବା ଆସିବେ ଲେଉଛି ।୭୪।
ସ୍ୱାମୀ ଲେଖିଲେ ଆଠ ଶ୍ଳୋକ || ପ୍ରଭୁର ସ୍ୱଭାବ ସେ ଯେତେକ ।୭୫।
ପ୍ରଭୁଙ୍କୁ ଶ୍ଳୋକ ଶୁଣାଇଲେ || ଶୁଣିଲେ ପ୍ରଭୁ କୋଳ କଲେ ।୭୬।
ଶ୍ରୀମାଧବ ସେ ଚଳିଗଲେ || ପ୍ରଭୁ ସେ ଲେଖିଛୁ ବୋଇଲେ ।୭୭।
ଯାଜନଗ୍ର ପଶଯନ୍ତରେ || ସକଳେ ଥିଲେ ସେଠାବରେ ।୭୮।
କେହୁ ଲେଉଟି ନ ଅଇଲେ || ଶ୍ରୀ ବାନଧ ସେ ସମେତରେ ।୭୯।
ସକଳେ ଗଲେ ଗୌଡ଼ମାର୍ଗେ || ସେ ପଛୁଁ ଏକ ବଡ଼ ଘରେ ।୮୦।
ବୃନ୍ଦାବନରେ ଯାଇ ମିଳିଲେ || ରୂପ ସନାତନେ ଭେଟିଲେ ।୮୧।
ରୂପ ରଖାଇଲେ ସେମାନଙ୍କୁ || ଗିରି ଗୋବର୍ଦ୍ଧନ ଯାବକୁ ।୮୨।
ଥିଲେ ବଲ୍ଲଭ ଚାଟମାନେ || ଗୌଡ଼ୀୟଙ୍କୁ ନଦେଲେ ଛଡେଣେ ।୮୩।
କଳି ଲାଗିଲା ଘୋରତର || ମାଡ଼ ଖାଆ ଗୌଡ଼ୀୟା ନିକର ।୮୪।
ଗୌଡ଼ୀୟା ବୋଇଲେ ଦେବତୁ || ସବୁ ଅନ୍ନଜଳ ଖାଇବୁ ।୮୫।

---

ସନ୍ଦେହ ନ ଥାଇପାରେ । ଶ୍ଳୋକ ଗୁଡ଼ିକରେ ଅଶେଷ ତନ୍ମୟତା ଓ ବୈଷ୍ଣବୋଚିତ ଅଚରଣ ଝଧ ଝଦ୍ଧତ । ଏ ଗୁଡ଼ିକର ଉଦ୍ଦେଶ୍ୟ—ବହିର୍ମୁଖ ଭକ୍ତ ଗୋଷ୍ଠୀଙ୍କୁ ବାଟକୁ ଆଣିବା । ଯାଜପୁରରେ ଅବସ୍ଥାନ କରୁଥିବା ଯେଉଁ ଭକ୍ତ ଗୋଷ୍ଠୀ ଚୈତନ୍ୟଙ୍କର ଆଠଟି ଶ୍ଳୋକ ପଢ଼ିଲେ ସେ ମଠ ପୁରୀକୁ ଫେରିଲେ ନାହିଁ, ସେମାନଙ୍କ ସମ୍ପର୍କରେ ନୂତନ ସମ୍ବାଦମାନ ମାଧବଙ୍କ ଜୀବନୀରୁ ଜଣାଯାଏ । ଏମାନଙ୍କ ମଧ୍ୟରୁ ଏକ ବଡ଼ ଭାଗ ନବଦ୍ୱୀପରୁ ବୃନ୍ଦାବନ ଗଲେ । ରୂପ ସନାତନଙ୍କ ସହିତ ସମ୍ମିଳିତ ହେଲେ । ମାତ୍ର ସେଠାର ଗିରି ଗୋବର୍ଦ୍ଧନରେ ଶ୍ରୀବଲ୍ଲଭଙ୍କ ଶିଷ୍ୟମାନେ ପୂଜା କରୁଥିବା ଗୋପାଳଙ୍କ ସେବା ପୂଜାକୁ ଅଧିକାର କରି ମନ୍ଦିରର "ସବୁ ଅନ୍ନଜଳ ଖାଇବୁ" ବୋଲି ଦାବୀ କଲେ । ବଲ୍ଲଭଙ୍କ ଶିଷ୍ୟ ଓ ଗୌଡ଼ୀୟ ଭକ୍ତଙ୍କ ମଧ୍ୟରେ କଳି ଲାଗିଲା । ଏହି କଳିରେ ଗୌଡ଼ୀୟ ଭକ୍ତମାନେ ବଲ୍ଲଭଙ୍କ ଶିଷ୍ୟଙ୍କ ହାତରୁ ମାଡ଼ ଖାଇଲେ । ଏକଥା ଉତ୍ତରରୁ ଫେରି କହ୍ନାଇ ଖୁଣ୍ଟିଆ ପୁରୀରେ ଶ୍ରୀଚୈତନ୍ୟ ଓ ଅନ୍ୟମାନଙ୍କ ଆଗରେ ପ୍ରକାଶ କଲେ । ଯେଉଁମାନେ ପୁରୀରୁ ମାଡ଼ଖାଇ ପଳାଇଥିଲେ,

ଗୋପାଳ ସେବା ନ ଛାଡ଼ିଲେ || ଜଳ ଲଗିଲା ତହୁଁ ଭୁଲେ ।୮୬।
ଶ୍ରୀବଲ୍ଲଭର ସେବକେ || ମାଗିଲେ ମାଡ଼ ତହୁଁ ଥୋକେ ।୮୭।
ବଙ୍ଗଳେ ଗୌଡ଼ିଆ କେତେକେ || ଚୁଡ଼ା ଗଲେକ ଦେଥୁ ଥୋକେ ।୮୮।
ରହିଲେ କଚୁ ସେହୁ ଥାନେ || ରୂପ ଗୋସାଇଁ ସନ୍ନିଧାନେ ।୮୯।
ରଥକୁ ସମ୍ବାଦ ଶୁଣିଲ || କହ୍ନାଇ ଅ.ସି ବୋଇଲରୁ ।୯୦।
ପ୍ରଭୁଙ୍କୁ କହ୍ନାଇ ବୋଇଲା || ପ୍ରଭୁ ବୋଇଲା ଭଲ ହେଲା ।୯୧।
ମାଡ଼ ଖାଆ ସ୍ୱଭାବ ଯାହାର || ମାଡ଼ ଖାଇବେ ନିରନ୍ତର ।୯୨
ତଥାପି ଚେତା ନ ପଶିବ || ଯାହାର ହେମନ୍ତ ସ୍ୱଭାବ ।୯୩।

## ସ୍ୱାମୀର ଅଷ୍ଟଶ୍ଳୋକ

ଚେତୋ ଦର୍ପଣ ମାର୍ଜନଂ ଭବମହାଦାବାଗ୍ନି ନିର୍ବାପଣଂ
ଶ୍ରେୟଃ କୈରବ ଚନ୍ଦ୍ରିକା ବିତରଣଂ ବିଦ୍ୟାବଧୂ ଜୀବନମ୍ ।
ଆନନ୍ଦାମ୍ବୁଧିବର୍ଦ୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତାସ୍ୱାଦନମ୍
ସର୍ବାତ୍ମସ୍ନପନଂ ପରଂ ବିଜୟତେ ଶ୍ରୀକୃଷ୍ଣ ସଙ୍କୀର୍ତ୍ତନମ୍ ।୧।

କୃଷ୍ଣର ଗୁଣ କୀର୍ତ୍ତନରେ || ମନ ଦର୍ପଣ ପରିଷ୍କାରେ
ଅମ୍ଭା କଳୁଷ ଦୂର ହୋଇ || ଧେଉନ ସ୍ୱବହି ସରଇ
ସଙ୍କୀର୍ତ୍ତନ ସେ ଶିକ୍ଷା ଦାତା || ଭକ୍ତର ସଞ୍ଚାର କରତା
ନିର୍ମଳ ପ୍ରେମ ବୃଦ୍ଧି ପାଇ || କୃଷ୍ଣ ପ୍ରେମ ମଧୁ ଚଖାଇ
ଇନ୍ଦ୍ରିୟ ସବ ହୋଏ ତୃପ୍ତ || କୃଷ୍ଣ ନାମ ସଙ୍କୀର୍ତ୍ତନ ଏମନ୍ତ

ନାମ୍ନାମକାରି ବହୁଧା ନିଜ ସର୍ବଶକ୍ତି—
ସ୍ତତ୍ରାର୍ପିତା ନିୟମିତଃ ସ୍ମରଣେ ନ କାଳଃ ।
ଏତାଦୃଶୀ ତବ କୃପା ଭଗବାନ ମମାପି
ଦୁର୍ଦ୍ଦୈବମୀଦୃଶମିହାଜନି ନାନୁରାଗଃ ।୨।

---

ସେମାନେ ବୃନ୍ଦାବନରେ ମଧ୍ୟ ମାଡ଼ ଖାଇଲେ । ଏହା ଶୁଣି ଚୈତନ୍ୟ କହିଲେ—ଯାହାର ମାଡ଼ ଖାଇବା ସ୍ୱଭାବ, ସେ ଯେ କୌଣସି ସ୍ଥାନରେ ହେଲେ ମାଡ଼ ହିଁ ଖାଇବ । ଏଥିରେ ବିଚିତ୍ରତା କିଛିନାହିଁ ।

[ ଅଣପସ୍ୱଣ ]

ତୁମର ନାମ ଯେ ଅଶେଷ ॥ ବହୁ ନାମ ହେ ବହୁଅଙ୍ଗ
ସକଳ ନାମେ ତୁମ ଶକ୍ତି ॥ ପ୍ରକଟ ଦର୍ଶିଲେ ଦେବନ୍ତ
ନାମ ସ୍ମରଣ କୀର୍ତ୍ତନରେ ॥ ବେଳ ଅବେଳ ଅବସ୍ଥରେ
ହେ ପ୍ରଭୁ ! ଏହା ତୁମ କୃପା ॥ ମାତ୍ରକ ମୁ ଅଟେ ଦୁର୍ଭଗା
ମୋହ ହୃଦୟେ ଶ୍ରଦ୍ଧା ନାହିଁ ॥ ନାମକୁ ବରବ ନେହଭ

ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟ ସଦା ହରିଃ । ୩ ।

ତୃଣରୁ ନମ୍ର ବୋଲାଅ ॥ ବୃକ୍ଷ ଠାରୁଁ ସହିଷ୍ଣୁ ହୁଅ
ଆପଣା ସୁଖ ଦୁଃଖ ତ୍ୟଜି ॥ ଅପରେ ପ୍ରେମ ଦଅ ଢାଳି
ସର୍ବଦା ବୋଲ ହରି ନାମ ॥ ଏ ଠାରୁଁ ନାହିଁ ଅନ୍ୟ ଧାମ

ନ ଧନଂ ନ ଜନଂ ନ ସୁନ୍ଦରୀମ୍
କବିତାଂ ବା ଜଗଦୀଶ କାମୟେ ।
ମମ ଜନ୍ମନି ଜନ୍ମନୀଶ୍ୱରେ
ଭବତାଦ୍ ଭକ୍ତିରହୈତୁକୀ ତ୍ୱୟି । ୪ ।

ନ ଲୋଡେ ମୁହିଁ ଧନଜନ ॥ ଅବା ସୁନ୍ଦରୀ ସ୍ତ୍ରୀ ରତ୍ନ
କବିତା ରଚି କବି ହେବ ॥ ହେ ପ୍ରଭୁ ! ମୁଁ କପାଁ ବାଞ୍ଛିବ
ପ୍ରାର୍ଥନା କରଇ ସକଳେ ॥ ପ୍ରଭୁ ହୋ ! ଜନ୍ମଜନ୍ମାନ୍ତରେ
ତୁମର ଅନୁଗତ ହୋଇ ॥ ଯେମନ୍ତ ଭକ୍ତ ରହୁଥାଇ

ଅୟି ନନ୍ଦତନୁଜ କିଙ୍କରଂ
ପତିତଂ ମାଂ ବିଷମେ ଭବାମ୍ବୁଧୌ ।
କୃପୟା ତବ ପାଦପଙ୍କଜ
ସ୍ଥିତ ଧୂଳୀ ସଦୃଶଂ ବିଚିନ୍ତୟ । ୫ ।

ହେ କୃଷ୍ଣ ନନ୍ଦ ଗୋପସୁତ ॥ କୃପା କରହେ ଗୋପୀନାଥ
ପତିତ ମୁଁ ଏହି ସଂସାରେ ॥ ଭବସାଗରେ ବୁଡ଼ିମରେ
ପଦ୍ମ ଚରଣରେ ତୁମର ॥ ଧୂଳି କଣାଏ ବୋଲି ଧର

[ ପଦ୍ୱଣ ]

ନୟନଂ ଗଳଦଶ୍ରୁଧାରୟା
ବଦନଂ ଗଦ୍‌ଗଦରୁଦ୍ଧୟା ଗିରା ।
ପୁଲକୈର୍ନିଚିତଂ ବପୁଃ କଦା
ତବ ନାମ ଗ୍ରହଣେ ଭବିଷ୍ୟତି ।୬।

ଜଗନ୍ନାଥ ହେ ଚକାଅଛି ॥ ସେ ଦିନ କେବେ ଆସିବକି
ଯେବେ ତୋ ନାମ ଉଚ୍ଚାରଣେ ॥ କରୁ ଚକ୍ଷୁ ଅଶ୍ରୁ ମୋଚନ
ତୋହର ନାମ ଉଚ୍ଚାରଲେ ॥ କଣ୍ଠ ମୋ ରୋଧ ହେବ ଭଲେ
ଆନନ୍ଦେ ସମସ୍ତ ଶରୀର ॥ ପୁଲକେ ହେବ ଥର ଥର

ଯୁଗାୟିତଂ ନିମେଷେଣ ଚକ୍ଷୁଷା ପ୍ରାବୃଷାୟିତମ୍
ଶୂନ୍ୟାୟିତଂ ଜଗତ୍ ସର୍ବଂ ଗୋବିନ୍ଦ ବିରହେଣ ମେ ।୭।

ହରିର ବିଚ୍ଛେଦେ ମୋ ହୃଦ ॥ ଦହନ ହେଉଛି ଅମାପ
ମୁହୂର୍ତ୍ତ ଏକ ଯୁଗ ସମ ॥ ଚକ୍ଷୁରୁ ଝରେ ଧାରାବାର
ସକଳ ଜଗ ଶୂନ୍ୟବୋଧ ॥ ହରି ବିରହ ଗୁରୁବାଧ

ଆଶ୍ଳିଷ୍ୟ ବା ପାଦରତାଂ ପିନଷ୍ଟୁ ମାମ୍
ଅଦର୍ଶନାନ୍ମର୍ମହତାଂ କରୋତୁ ବା ।
ଯଥା ତଥା ବା ବିଦଧାତୁ ଲମ୍ପଟୋ
ମତ୍ ପ୍ରାଣ ନାଥସ୍ତୁ ସ ଏବ ନାପରଃ ।୮।

ହେ କୃଷ୍ଣ ! ମୋତେ କଷ୍ଟ ଦିଅ ॥ ଅଥବା ତୋ ପାଦେ ଝଟାଅ
କର ତୁ ମୋରେ ଅଲିଙ୍ଗନ ॥ ଅଥବା ନ ଦିଅ ଦର୍ଶନ
ପ୍ରେମରେ ରତ ମତ ହେଲ ॥ ଯାପନ ସ୍ୱର୍ଗି ଭିନ୍ନଥଲ
ତଥାପି ତୁ ମୋର ପରାଣ ॥ ତୋ ବିନୁ ଗତି ନାହିଁ ଆନ
ସୁଧାର ଭାବ ଏ ସରବ ॥ ବର୍ଣ୍ଣିଲ ସ୍ୱାମୀ ଆଠ ଶ୍ଲୋକ

ଇତି ଷଷ୍ଠ ଅଧ୍ୟାୟ ସମ୍ପୂର୍ଣ୍ଣ



# ସପ୍ତମ ଅଧ୍ୟାୟ

•

ଶୁଣ ହୋ ଚଉଦ ବୈଷ୍ଣବ ॥ ସର୍ବ ବୃଜନ ନାଶ ଯିବ । ୧ ।
ସ୍ୱାମୀ ବୋଇଲେ ମନ୍ତ୍ର ନେବ ॥ ରାଗମାର୍ଗେ କୃଷ୍ଣ ଭଜିବ । ୨ ।
ଛାଡ଼ିବ ସାହାସ୍ତ୍ର ପୁରାଣ ॥ ଏଥେଟି କସ କାର୍ଯ୍ୟ ପୁଣ । ୩ ।
ପ୍ରଭୁ ବୋଇଲେ ଦୀକ୍ଷା ନଅ ॥ ବଳରାମଠାଇଁ ତୁ ଯାଅ । ୪ ।
ବଚନ ଶିଖ ବଳରାମ ॥ ତା ଉତ୍ତୁଁ ମନ୍ତ୍ର ନଅ ପୁଣ । ୫ ।
ତା ଉର୍ତ୍ତେଁ ସ୍ୱରୁ ନାହିଁ ଆନ ॥ ଭଗତ ଶ୍ରବ ଗଣଆନ । ୬ ।
ସ୍ୱାମୀ ଯେ ମନ୍ତ୍ର ଦୀକ୍ଷା ନେଲ ॥ ବଳରାମଙ୍କୁ ପ୍ରଣମିଲ । ୭ ।
କାଶୀ ମିଶ୍ର ଏହା ଶୁଣିଲେ ॥ ସ୍ୱାମୀରେ ବହୁ କୋପ କଲେ । ୮ ।X
ବ୍ରାହ୍ମଣ ହୋଇ ଶୂଦ୍ରମୁଖ ॥ ମନ୍ତ୍ରଦୀକ୍ଷା ରୁ ଉପଦେଶୁ । ୯ ।
ଏଥିଟି ନାହିଁ ଅବଦସ୍ତ ॥ କଳିକାଳର ହୂରସ୍ୱର । ୧୦ ।
ସ୍ୱାମୀ ବୋଇଲ ବଇଷ୍ଣବେ ॥ ଦୋଷ ନ ବାଧଇଟି ଲବେ । ୧୧ ।
କବା ଶୂଦ୍ର କବା ବ୍ରାହ୍ମଣ ॥ ମନୁଷ୍ୟ ସମସ୍ତ ସମାନ । ୧୨ ।@
ନୀଚ ସ୍ଥାନରେ ଥଲେ ରତ୍ନ ॥ ଗ୍ରହଣ କରିବାଟି ଧର୍ମ । ୧୩ ।
ଏଣୁ ମୋହର ମନ ଦୃଢ଼ ॥ ନିଷ୍ଠ ଭଲ ବଳରାମରେ । ୧୪ ।
ଏଥକୁ ତୁ କପା ଉରେଜ୍ ॥ ରାମ ମାର୍ଗେଣ ଅମ୍ଭେ ଭଜୁ । ୧୫ ।
ଶୁଣିଲେ ଏହା ସାର୍ବଭୌମ ॥ ମେଘୁ ଲକ୍ଷ୍ମୀଧର ପୁଣ । ୧୬ ।
ବୋଇଲେ କହୁ ହିଁ ନ କହ ॥ ଜଗନ୍ନାଥର ଶିଷ ଦେହ । ୧୭ ।
କାଶୀ ମିଶ୍ରଙ୍କୁ ପ୍ରବୋଧିଲେ ॥ ସ୍ୱାମୀରେ ଟେକା ଢୋଇଲେ । ୧୮ ।

•

X ୮- ଖ ପୋଥି—ଚହୁତ କ୍ଷିପିଲେ । @ ୧୨- ବୈଷ୍ଣବ ସମସ୍ତ ସମାନ ।

୧-୧୮ ସ୍ୱାମୀ ଜଗନ୍ନାଥ ଦାସ 'ଅଣଉପଦେଶିଆ' ଥିଲେ - ଅର୍ଥାତ୍ ସେ ମନ୍ତ୍ରଦୀକ୍ଷା ନେଇ ନ ଥିଲେ । ଏଥିଲାଗି ଗୌଡ଼ୀୟ ଭକ୍ତଙ୍କ ମଧ୍ୟରୁ ଅନେକେ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ବନ୍ଧୁତାକୁ ଭଲ ଆଖିରେ ଦେଖି ନ ଥିଲେ । ମାଧବୀ ଦାସୀ—ଶ୍ରେଷ୍ଠ ହରିଦାସ ଘଟଣାରେ ଜଗନ୍ନାଥ ଦାସଙ୍କ ବିରୁଦ୍ଧରେ ଏ ଅଭିଯୋଗ ସାଧାରଣ ସ୍ୱରରୁ ଶୁଣାଗଲା । ଏହାପରେ ଜଗନ୍ନାଥ ଦାସ ମନ୍ତ୍ରଦୀକ୍ଷା ନେବାକୁ ଇଚ୍ଛା କଲେ । ରାଗ ମାର୍ଗରେ କୃଷ୍ଣ ଭଜନ କରିବା ଓ ତଦନୁ-ଯାୟୀ ଶାସ୍ତ୍ର ପୁରାଣ ପାଠ ପଠନ ପ୍ରତି ଅଶ୍ରଦ୍ଧା ଜାତ ହେବା ଜଗନ୍ନାଥ ଦାସଙ୍କ ଜୀବନରେ ଏଠାରୁ ଆରମ୍ଭ ହେଲା । ମାଧବଙ୍କ ବର୍ଣ୍ଣନାର କମ ଦୃଷ୍ଟିରୁ ଏହା ଖ୍ରୀ: ୧୫୧୭-୧୮ ହୋଇପାରେ । ମନ୍ତ୍ରଦୀକ୍ଷା ବଳରାମ ଦାସଙ୍କ ଠାରୁ ଗ୍ରହଣ

ଏ ଚତୁର୍ଁ କଛୁଡନ ଅନ୍ତେ || ପ୍ରଭୁ ଯେ ରଘୁନାଥ ଦାସେ ।୧୯।
ହକାର ବୋଲେ ଏଥୁ ନିଅ || ଗୋବର୍ଦ୍ଧନ ଶିଳାଏ ସମ୍ଭାଅ ।୨୦।
ଏହୁଟି ଶିଳା ଶାଳଗ୍ରାମ || ଏହାକୁ କରେ ନମଣ ।୨୧।
ସାର୍ବଭୌମ ଲକ୍ଷ୍ମୀଧର ଶୁଣିଲେ || ଚିତ୍ତରେ ହେତୁ ମୌନ ହେଲେ ।୨୨।
ଶୂଦ୍ରର ହେଲା ଅଧିକାରେ || ଶାଳଗ୍ରାମ ଶିଳା ପୂଜାରେ ।୨୩।
ଶୂଦ୍ରକୁ ବିପ୍ର କି ବୋଲିଇ || ଏଥକୁ ଆନ କି ସାଧ୍ୟାଇ ।୨୪।
ନାହିଁ ନୋହିବା କଥା ହେଲା || କାଶୀ ମିଶ୍ର ଯେ କୋପ କଲା ।୨୫।
ଅଚ୍ୟୁତ ଅନନ୍ତ ଯଶୋବନ୍ତ || ବଳରାମ ଯେ ଜଗନ୍ନାଥ ।୨୬।
ପ୍ରଭୁର ତୁଲେ ନିତ୍ୟ ରସି || ସାହାସ୍ତ ପୂରବେ ଉପେକ୍ଷି ।୨୭।

---

୨୦- ବେରେ ନିଅ । ୨୧- ଏ ଅଟେ ।

---

କରିବା ପାଇଁ ଶ୍ରୀଚୈତନ୍ୟ ଇଙ୍ଗିତ ଦେଲେ । କାରଣ ବଳରାମ ଥିଲେ ବୟସ ସିଦ୍ଧ ଓ ବୟୋଜ୍ୟେଷ୍ଠ । ଭକ୍ତ ଭାବରେ ଏକନିଷ୍ଠତାରେ ସେ ଥିଲେ ଅଦ୍ୱିତୀୟ । ଦାସେ ବଳରାମଙ୍କ ଠାରୁ ମନ୍ତ୍ର ଦୀକ୍ଷା ନେଲେ; ମାତ୍ର କାଶୀ ମିଶ୍ର ଏହି ଘଟଣାରେ ଦାସଙ୍କ ପ୍ରତି କ୍ରୁଦ୍ଧ ହେଲେ ଓ ବିରକ୍ତି ପ୍ରକାଶ କଲେ । କ୍ରୋଧର କାରଣ— ଜଣେ ଶାସନୀ ବ୍ରାହ୍ମଣ, ଶୂଦ୍ରଠାରୁ ମନ୍ତ୍ର ଦୀକ୍ଷା ନେବା । ଏହା ଉଚିତ ବ୍ୟବହାର ନୁହେଁ; ବରଂ ଏହା କଳିକାଳର ଏକ ଦୁର୍ବ୍ୟବହାର । ଜଗନ୍ନାଥ କିନ୍ତୁ ଆତ୍ମପକ୍ଷ ସମର୍ଥନ କଲେ—କେବଳ ଆତ୍ମପକ୍ଷ ସମର୍ଥନ କଲେନାହିଁ, ଜାତି ପ୍ରଥା ତା ବ୍ରାହ୍ମଣ ଶୂଦ୍ର ଭେଦ ଯେ ସମାଜର ଏକ କଳଙ୍କ, ଏ ବିଷୟ ଦୃଢ଼ୋକ୍ତି ଫିଟାଇବାରେ ଜଗନ୍ନାଥ ଦାସଙ୍କ ବ୍ୟକ୍ତିତ୍ୱ ଓ ମାନସିକ ସାହସ ସେ ଯୁଗରେ ଅଦ୍ୱିତୀୟ । ସେତେବେଳେ ଓଡ଼ିଶା ଏକ କଳୁଷିତ ଅଧଃପତନର ଅନ୍ଧକାର ଗର୍ଭକୁ ଟାଣି ହୋଇ ଯାଉଥିଲା— ଅନ୍ୟଥା ସ୍ୱାମୀ ଜଗନ୍ନାଥ ଦାସଙ୍କର ଏହି ଉନ୍ନତ ଦୃଢ଼ୋକ୍ତି ସମାଜର ଗତିକୁ ବଦଳାଇ ପାରିଥାନ୍ତା ଏବଂ ସମସାମୟିକ ଭାରତବର୍ଷରେ ଏହା ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥାନ୍ତା ।

୧୯-୩୦ ଶ୍ରୀଚୈତନ୍ୟ ଏହାର କିଛୁଦିନ ପରେ ଶୂଦ୍ର ରଘୁନାଥ ଦାସ ଗୋସ୍ୱାମୀଙ୍କୁ ସେ ପ୍ରତିଦିନ ପୂଜା କରୁଥିବା ଗୋବର୍ଦ୍ଧନ ଶିଳା (ଶାଳଗ୍ରାମ) ଅର୍ପଣ କଲେ । ସେ ପର୍ଯ୍ୟନ୍ତ ରଘୁନାଥ ଦାସ ଗୋସ୍ୱାମୀ ନୀଳାଚଳରେ ଶ୍ରୀଚୈତନ୍ୟଙ୍କର ନିତ୍ୟ ସଙ୍ଗୀ ଥିଲେ । ଶୂଦ୍ରକୁ ଶାଳଗ୍ରାମ ଶିଳାର ପୂଜାଧିକାର ଦେବା ଭଳି ଏକ ବୈପ୍ଳବିକର ଘଟଣା ସେତେବେଳେ ନୀଳାଚଳର ସ୍ମାର୍ତ୍ତ ଗୋଷ୍ଠୀରେ ଖୁବ୍ ଆଲୋଡ଼ନ ସୃଷ୍ଟି କଲା । ବାସୁଦେବ ସାର୍ବଭୌମ ଓ ଲେଙ୍କ ଲକ୍ଷ୍ମୀଧର ପ୍ରମୁଖ

